# ନୂଆ ଗଣତନ୍ତ୍ର



## ମାଓ ସେ ତୁଂ


ଅନୁବାଦକ—
ଗୋବିନ୍ଦଚନ୍ଦ୍ର ମହାନ୍ତି



ମୂଲ୍ୟ-ବାର ଅଣା

# ଚୀନର ନୂଆ ଗଣତନ୍ତ୍ର

## ଚୀନର ଗତି କେଉଁଆଡ଼େ ?

ପ୍ରତିରୋଧ ମୂଳକ ଯୁଦ୍ଧ ଆରମ୍ଭ ହେବା ପରେ ଆମ ଦେଶବାସୀଙ୍କ ଭିତରେ ଆନନ୍ଦ ଉତ୍ସାହ ଖେଳିଗଲା । ଆଗର ଶୁଖିଲା ମୁହଁ ଆଉ ଦେଖାଗଲା ନାହିଁ, କାରଣ ଆମ ଜାତି ଯେ ଉଦ୍ଧାରିବାର ବାଟ ସବାଶେଷରେ ପାଇଛି ଏ ବିଶ୍ୱାସ ସଭିଙ୍କର ଜନ୍ମିଲା । ନିକଟରେ ଯେଉଁ ଆପୋଷର ହାଓ୍ୱା ଖେଳିଛି ଓ କମ୍ୟୁନିଜିମ୍ ବିରୁଦ୍ଧରେ ନିନ୍ଦା ପ୍ରଚାରର ସୁଅ ଛୁଟିଛି ତାହା ପୁଣି ଲୋକଙ୍କ ଭିତରେ ବିସ୍ମୟ ସୃଷ୍ଟିକରିଛି । ଏପରି ବିସ୍ମୟ ବିଶେଷ ଭାବେ ତରୁଣ ଯୁବ ଏବଂ ସଂସ୍କୃତିକ୍ଷେତ୍ରରେ କାମ କରୁଥିବା ଲୋକଙ୍କଠାରେ ଦେଖା ଦେଉଛି । କାରଣ ଅନ୍ୟମାନଙ୍କଠାରୁ ଏମାନଙ୍କର ଅନୁଭବ ଅଧିକ ତୀବ୍ର । ତେଣୁ ଆଜି ଆମ ଆଗରେ ପ୍ରଶ୍ନ ଉଠୁଛି "କିପରି ଆଗେଇବା ? କିମ୍ବା ଚୀନର ଗତି କେଉଁଆଡେ ?" ଏହି କାରଣରୁ 'ଚୀନ-ସଂସ୍କୃତି' ପତ୍ରିକାର ପ୍ରକାଶନର ସୁଯୋଗ ଆମେ ବ୍ୟବହାର କରିବା ଆବଶ୍ୟକ । ତାର ଜରିଆରେ ଚୀନ ରାଜନୀତି ଓ ଚୀନ ସଂସ୍କୃତି ସଂବନ୍ଧରେ ପଦେ ଅଧେ କହିହେବ । ସାଂସ୍କୃତିକ ସମସ୍ୟାରେ ମୁଁ ଅଗୁଆଁର । ମୁଁ ସେ ସମ୍ବନ୍ଧରେ ଅଧ୍ୟୟନ କରିବାକୁ ଖୁବ୍ ଇଚ୍ଛା କରେ, କିନ୍ତୁ ଏ ସମ୍ପର୍କରେ ମୁଁ ପାଦ ବଢ଼େଇଚି ମାତ୍ର । ଯାହାହେଉ ଆମ କମ୍ରେଡ଼ମାନେ ଏ ସମ୍ପର୍କରେ ଯେତାନରେ ଗମ୍ଭୀର ।

ଆଲୋଚନାପୂର୍ଣ୍ଣ ପ୍ରବନ୍ଧମାନ ଲେଖିଛନ୍ତି, ତେଣୁ ମୋର ମୋଟା ମୋଟି ଲେଖାଟିକୁ କେବଳ ଭୂମିକା ବୋଲି ଦେଖିବାକୁ ହେବ । ଆମ ଦେଶର ପ୍ରମୁଖ ସାଂସ୍କୃତିକକର୍ମୀମାନଙ୍କ ଲାଗି ଆମର ଏ ଲେଖା କେବଳ ବିନୀତ ପ୍ରସ୍ତାବ ହିସାବରେ କାମ ଦେବ । ଆମର ଆଶା ଏହା ଫଳରେ ମିଳିତ ଆଲୋଚନା ଆରମ୍ଭ ହେବ ଓ ଆମ ଦେଶର ଆବଶ୍ୟକତା ଅନୁଯାୟୀ ନିର୍ଭୁଲ ନିର୍ଦ୍ଧାରଣ ହେବ । "ମୂର୍ତ୍ତ ଘଟଣା ଗୁଡ଼ିକରୁ ସତ୍ୟର ସନ୍ଧାନ" କରିବାହିଁ ବୈଜ୍ଞାନିକ ଦୃଷ୍ଟିକୋଣ ଏବଂ ଦୃଷ୍ଟିକୋଣ ଯଦି ଅହମିକା ଯୋଗୁଁ ହୁଏ, ବା ମନକୁ ମନ ତାହା ଖୁବ୍ ମୁଖ୍ୟ ବୋଲି ଧରାଯାଏ କିମ୍ବା ଛାଁକୁ ଛାଁ ତାକୁ ଜୋର ଦେଇ କୁହାଯାଏ ତେବେ ତାହା ଫଳରେ ସମସ୍ୟାଗୁଡ଼ିକର ସମାଧାନ ହେବନାହିଁ । ଆମକାଡର ବିପତ୍ତି ଖୁବ୍ ସଙ୍ଗୀନ । କେବଳ ମାତ୍ର ବୈଜ୍ଞାନିକ ଦୃଷ୍ଟିକୋଣ ଓ ଦାୟିତ୍ୱ ବୋଧହିଁ ଆମ୍ଭକୁ ମୁକ୍ତି ଆଡ଼କୁ ଘେନିଯିବ । ମନୋଗତ ଆତ୍ମମ୍ଭରିତା ଫଳରେ ସତ୍ୟରେ ପହଞ୍ଚି ହୁଏନାହିଁ । ମୂର୍ତ୍ତ କାର୍ଯ୍ୟଗତ ଅଭ୍ୟାସହିଁ ସତ୍ୟରେ ପହଞ୍ଚାଏ । ସତ୍ୟର ମାପକାଠି ହେଉଛି କେବଳ ଲକ୍ଷକୋଟି ଜନସାଧାରଣଙ୍କ ବୈପ୍ଳବିକ କାର୍ଯ୍ୟ । 'ଚୀନ ସଂସ୍କୃତି' ପତ୍ରିକା ପ୍ରକାଶନ ପ୍ରତି ଏହାହିଁ ଆମର ଦୃଷ୍ଟିକୋଣ ।



## ଆମେ ଏକ ନୂତନ ଚୀନ ପ୍ରତିଷ୍ଠା କରିବୁ

ଗତ ଅନେକ ବର୍ଷ ଧରି କମ୍ୟୁନିଷ୍ଟମାନେ ଚୀନରେ କେବଳ ରାଜନୈତିକ, ଅର୍ଥନୈତିକ ବିପ୍ଳବ ନୁହେଁ, ସାଂସ୍କୃତିକ ବିପ୍ଳବ ଲାଗି ସଂଗ୍ରାମ କରିଆସିଛନ୍ତି । ଏ ସବୁର ଉଦ୍ଦେଶ୍ୟ ହେଉଛି ଚୀନ ଲୋକଙ୍କ ଲାଗି ଏକ ନୂଆ ସମାଜ ଓ ନୂଆ ଦେଶ

ଗଢ଼ିବା । ଏହି ନୂଆ ସମାଜ ଓ ଦେଶରେ ଖାଲି ଏକ ନୂଆ ରାଜନୈତିକ ଓ ଆର୍ଥିକ ବ୍ୟବସ୍ଥା ଯେ ରହିବ ତାହା ନୁହେଁ ଏକ ନୂଆ ସଂସ୍କୃତି ମଧ୍ୟ ପ୍ରଚଳିତ ହେବ । ଏହାର ଅର୍ଥ ଆମେ ରାଜନୈତିକ ଭାବେ ଅତ୍ୟାଚାରିତ ହେଉଥିବା ଓ ଆର୍ଥିକ ଭାବେ ଶୋଷିତ ହେଉଥିବା ଚୀନକୁ କେବଳ ରାଜନୈତିକ ଭାବେ ସ୍ୱାଧୀନ ଓ ଆର୍ଥିକ ଭାବେ ସମୃଦ୍ଧ କରିବୁ ସେତିକି ନୁହେଁ, ଅଧିକନ୍ତୁ ଯେଉଁ ଦେଶର ଲୋକେ ଏତେ ଅଜ୍ଞ, ପଶ୍ଚାତପଦ ଓ ପୁରାତନ ସଂସ୍କୃତି ଦ୍ୱାରା ଶାସିତ, ସେମାନଙ୍କୁ ସଭ୍ୟ, ପ୍ରଗତିଶୀଳ କରି ଏକ ନୂତନ ସଂସ୍କୃତି ଦେବାକୁ ହେବ । ତେଣୁ ଚୀନ ଜାତିର ଏକ ନୂଆ ସଂସ୍କୃତି ପ୍ରତିଷ୍ଠା କରିବା ସାଂସ୍କୃତିକ କ୍ଷେତ୍ରରେ ଆମ କାମର ଲକ୍ଷ୍ୟ ।

---

—୩—

## ଚୀନର ଐତିହାସିକ ବୈଶିଷ୍ଟ୍ୟ

ଆମେ ଯେଉଁ ଚୀନଜାତିର ନୂତନ ସଂସ୍କୃତି ପ୍ରତିଷ୍ଠା କରିବାକୁ ବସିଛେ ତାହା କଣ ?

କୌଣସି ନିର୍ଦ୍ଦିଷ୍ଟ ସଂସ୍କୃତି (ଭାବ ଗୁଡ଼ିକର ଏକ ଗୁଚ୍ଛ) ସମାଜର ଏକ ନିର୍ଦ୍ଦିଷ୍ଟ ରାଜନୈତିକ ଓ ଅର୍ଥନୈତିକ ବ୍ୟବସ୍ଥାର ପ୍ରତିଫଳନ; ଯଦିଓ ଏହି ସଂସ୍କୃତି ଅନ୍ୟ ପକ୍ଷରେ ଏହି ରାଜନୀତି ଓ ଅର୍ଥନୀତି—ବ୍ୟବସ୍ଥା ଉପରେ ଖୁବ ପ୍ରଭାବ ବିସ୍ତାର କରେ ଏବଂ ରାଜନୀତି ହେଉଛି ଅର୍ଥନୀତିର ନିର୍ଯ୍ୟାସ । ସଂସ୍କୃତି ରାଜନୀତି ଓ ଅର୍ଥନୀତିର ପରସ୍ପର ସଂପର୍କ ସଂବନ୍ଧରେ ଏହା ହେଉଛି ଆମର ମୌଳିକ ଦୃଷ୍ଟିଭଙ୍ଗୀ । ତେଣୁ ଏକ ନିର୍ଦ୍ଦିଷ୍ଟ ରାଜନୀତି ଓ ଅର୍ଥନୀତି କୌଣସି ଏକ

ନିର୍ଦ୍ଦିଷ୍ଟ ସଂସ୍କୃତିକୁ ନିୟନ୍ତ୍ରଣ କରେ ଏବଂ ତାପରେ ଉକ୍ତ ସଂସ୍କୃତି ସେହି ରାଜନୀତି ଓ ଅର୍ଥନୀତି ଉପରେ ପ୍ରଭାବ ବିସ୍ତାର କରେ । ମାର୍କସ୍ କହିଥିଲେ "ମଣିଷର ଚେତନା ତାହାର ସ୍ଥିତିକୁ ନିୟନ୍ତ୍ରଣ କରେ ନାହିଁ ବରଂ ଅପର ପକ୍ଷରେ ତାହାର ସ୍ଥିତି ତାହାର ଚେତନାକୁ ନିୟନ୍ତ୍ରଣ କରେ ।" ସେ ଆହୁରି ମଧ୍ୟ କହିଥିଲେ—"ଦାର୍ଶନିକ-ମାନେ କେବଳ ଜଗତକୁ ବିଭିନ୍ନ ପ୍ରକାରେ ବ୍ୟାଖ୍ୟା କରିଛନ୍ତି, ମାତ୍ର ଅସଲ କଥା ହେଉଛି ଜଗତକୁ ବଦଳାଇବା ।" ମାନବ ସମାଜ ଇତିହାସରେ ଏହା ହେଉଛି ପ୍ରଥମ ବୈଜ୍ଞାନିକ ବ୍ୟାଖ୍ୟା । ତାହାହିଁ ଆଦର୍ଶ ଓ ସ୍ଥିତି ଏ ଦୁହିଁଙ୍କ ଭିତରେ ସଂପର୍କକୁ ନିର୍ଭୁଲ ଭାବେ ବୁଝାଇ ଦେବ । ଏହି ବ୍ୟାଖ୍ୟାକୁ ମୂଳଭିତ୍ତି କରି ମାର୍କସୀୟ ଦୃଷ୍ଟିଭଙ୍ଗୀକୁ ବିକାଶ କରାଇ ଲେନିନ ତାଙ୍କର ବିପ୍ଲବୀ ପ୍ରତିଫଳନ ତତ୍ତ୍ୱ ପ୍ରତିଷ୍ଠା କରିଥିଲେ । ଚୀନର ସାଂସ୍କୃତିକ ସମସ୍ୟା ସଂପର୍କୀୟ ଆମର ଆଲୋଚନାରେ ଏହି ମୂଳ ସୂତ୍ରଟିକୁ ଅବହେଳା କରିବା ଆଦୌ ଉଚିତ ନୁହେଁ ।

ତେଣୁ ଏକଥା ପରିଷ୍କାର ହେଉଛି ଯେ ଯେଉଁ ପୁରୁଣା ସଂସ୍କୃତିକୁ ଆମେ ଧୋଇ ଦେବାକୁ ଚାହୁଁ ତାହା ଆମ ଜାତିର ପୁରୁଣା ରାଜନୀତି ଓ ଅର୍ଥନୀତିରୁ ବିଚ୍ଛିନ୍ନ ନୁହେଁ ଏବଂ ଯେଉଁ ନୂତନ ସଂସ୍କୃତିକୁ ଆମେ ପ୍ରତିଷ୍ଠା କରିବାକୁ ଚାହୁଁ ତାହା ଆମ ନୂଆ ରାଜନୀତି ଓ ଅର୍ଥନୀତିରୁ ଅଲଗା ରହିପାରେ ନା । ପୁରୁଣା ରାଜନୀତି ଓ ପୁରୁଣା ଅର୍ଥନୀତି ପୁରୁଣା ସଂସ୍କୃତିର ମୂଳଦୁଆ ଏବଂ ନୂଆ ରାଜନୀତି ଓ ନୂଆ ଅର୍ଥନୀତି ନୂଆ ସଂସ୍କୃତିର ମୂଳ ଦୁଆ ।

ଚୀନର ପୁରୁଣା ରାଜନୀତି ଓ ଅର୍ଥନୀତିର ବିଷୟବସ୍ତୁ କଣ ? ଏବଂ ପୁରୁଣା ସଂସ୍କୃତିର ମଧ୍ୟ ବିଷୟବସ୍ତୁ କଣ ?

ଚୃଉ ଓ ଚୀନ ରାଜବଂଶଙ୍କ ବେଳୁ ଚୀନ ଏକ ସାମନ୍ତବାଦୀ ସମାଜ ହୋଇଚ । ତାହାର ରାଜନୀତି ଓ ଅର୍ଥନୀତିର ଚରିତ୍ର ସାମନ୍ତବାଦୀ ଥିଲା । ତାହାର ସଂସ୍କୃତି ମଧ୍ୟ ସେଇଆ ଥିଲା—ସେ ସଂସ୍କୃତି ସେହି ସାମନ୍ତବାଦୀ ରାଜନୀତି ଓ ଅର୍ଥନୀତିର ପ୍ରତିଫଳନ ।

ସେହିହେତୁ ବିଦେଶୀ ପୁଞ୍ଜିବାଦର ଆକ୍ରମଣ ବେଳୁ, ଏବଂ ଚୀନ ସମାଜରେ ପୁଞ୍ଜିବାଦୀଲୋକେ କ୍ରମେ ବଢିବା ଦିନୁ, ତା ଅର୍ଥ ଅଫିମଯୁଦ୍ଧ ବେଳୁ ଶହେବର୍ଷ ପଛରୁ ଆଜକା ଜାପାନବିରୋଧୀ ଯୁଦ୍ଧ ଯାଏ; କ୍ରମେ କ୍ରମେ ଚୀନ ଏକ ଔପନିବେଶିକ, ଅର୍ଦ୍ଧ ଔପନିବେଶିକ ଓ ଅର୍ଦ୍ଧ ସାମନ୍ତବାଦୀ ସମାଜରେ ପରିଣତ ହେଲା । ବର୍ତ୍ତମାନ ଅଧିକୃତ ଅଞ୍ଚଳରେ (ଜାପାନ ଯେଉଁ ସବୁ ଅଞ୍ଚଳ ଅଧିକାର କରିରଖିଥିଲା—ଅ: ବା:) ସମାଜର ପ୍ରକୃତି ଔପନିବେଶିକ, ଏବଂ ଅନଧିକୃତ ଅଞ୍ଚଳରେ ସମାଜର ପ୍ରକୃତି ଅର୍ଦ୍ଧ—ଔପନିବେଶିକ । ଏବଂ ଦୁଇଟିଯାକ ଅଞ୍ଚଳରେ ସାମନ୍ତବାଦୀ ପ୍ରଥା ତଥାପି ପ୍ରଚଳିତ । ପ୍ରଚଳିତ ଚୀନ ସମାଜର ବା "ଜାତୀୟ ଅବସ୍ଥାର" ଏହାହିଁ ହେଉଚି ପ୍ରକୃତି । ତେଣୁ ମୁଖ୍ୟ ରାଜନୀତି ଓ ଅର୍ଥନୀତିର ପ୍ରକୃତି ହେଉଛି ଔପନିବେଶିକ, ଅର୍ଦ୍ଧ ଔପନିବେଶିକ ଓ ଅର୍ଦ୍ଧ ସାମନ୍ତବାଦୀ ଏବଂ ସଂସ୍କୃତି ମଧ୍ୟ ତାହାହିଁ ।

ଏହିସବୁ ମୁଖ୍ୟ ରାଜନୀତି । ଅର୍ଥନୀତି ଓ ସଂସ୍କୃତି ଆମ ବିପ୍ଲବର ଉଦ୍ଦେଶ୍ୟ । ଏହି ପୁରୁଣା ଔପନିବେଶିକ, ଅର୍ଦ୍ଧ ଔପନିବେଶିକ ଓ ଅର୍ଦ୍ଧ-ସାମନ୍ତବାଦୀ ରାଜନୀତି, ଅର୍ଥନୀତି ଓ ସଂସ୍କୃତିକୁ ଆମେ ଧୋଇଦେବାକୁ ଚାହୁଁ ଏବଂ ଏହି ପୁରୁଣାର ଠିକ୍ ଓଲଟା ଏକ ନୂଆ ରାଜନୀତି, ଅର୍ଥନୀତି ଓ ସଂସ୍କୃତି ଆମେ ପ୍ରତିଷ୍ଠା କରିବାକୁ ଚାହୁଁ ।

ଚୀନ ଜାତିର ନୂଆ ରାଜନୀତି ଓ ନୂଆ ଅର୍ଥନୀତିର ବିଷୟ ବସ୍ତୁ ତେବେ କ'ଣ ହେବ ?

ଚୀନ ବିପ୍ଳବର ଐତିହାସିକ ଧାରାକୁ ନିଶ୍ଚୟ ଦୁଇ ଭାଗରେ ଭାଗ କରିବାକୁ ହେବ । ପ୍ରଥମ ହେଉଛି ଗଣତାନ୍ତ୍ରିକ ବିପ୍ଳବ; ଦ୍ୱିତୀୟ ହେଉଛି ସମାଜବାଦୀ ବିପ୍ଳବ ।—ଦୁଇଟିଯାକ ବୈପ୍ଳବିକ ଧାରା—ମାତ୍ର ପ୍ରକୃତି ଦୃଷ୍ଟିରୁ ଦୁହେଁ ପରସ୍ପର ଠାରୁ ଭିନ୍ନ । ଏଠି ଯେଉଁ ଗଣତନ୍ତ୍ର କଥା ଉଲ୍ଲେଖ ହୋଇଛି ଏହା ପୁରୁଣା ଧରଣର ପୁରୁଣା ଗଣତନ୍ତ୍ର ନୁହେଁ, ଏହା ନୂଆ ଧରଣର ନୂତନ ଗଣତନ୍ତ୍ର ।

ତେଣୁ ଏଥିରୁ ବାହାରୁଛି ଯେ ନୂଆ ରାଜନୀତି, ନୂଆ ଅର୍ଥନୀତି ଓ ନୂଆ ସଂସ୍କୃତି ଏହି ନୂତନ ଗଣତନ୍ତ୍ରର ରାଜନୀତି, ଅର୍ଥନୀତି ଓ ସଂସ୍କୃତିଠାରୁ ଅନ୍ୟକିଛି ନୁହେଁ ।

ବର୍ତ୍ତମାନର ଚୀନବିପ୍ଳବର ଏହାହିଁ ଐତିହାସିକ ବୈଶିଷ୍ଟ୍ୟ । ଚୀନର ବୈପ୍ଳବିକ କାର୍ଯ୍ୟରତ କୌଣସି ଲୋକ ଏହି ଐତିହାସିକ ବୈଶିଷ୍ଟ୍ୟକୁ ନ ଦେଖିପାରିଲେ ବିପ୍ଳବକୁ ସଫଳ କରିବାକୁ ନିର୍ଦ୍ଦେଶ ଦେବାରେ ସେ ଅକ୍ଷମ ହେବ । ଅନ୍ୟ ପକ୍ଷରେ ଲୋକେ ତାକୁ ଛାଡ଼ିଦେବେ ଏବଂ ସ୍ୱଭାବତଃ ସେ କରୁଣ ଭାବେ ଅସଫଳ ହେବ ।

—୪—

## ଚୀନର ବିପ୍ଳବ ବିଶ୍ୱବିପ୍ଳବର ଏକ ଅଂଶ

ଚୀନ ବିପ୍ଳବର ଯେଉଁ ଐତିହାସିକ ବୈଶିଷ୍ଟ୍ୟ ତାହା ଦୁଇଟି ସ୍ତରରେ ବିଭକ୍ତ—ଗୋଟିଏ ଗଣତନ୍ତ୍ର । ଅନ୍ୟଟି ସମାଜବାଦ । ମାମୁଲି-ଭାବେ ଗଣତନ୍ତ୍ର ବୋଲି ଯାହା ବୁଝାଏ ତାହା ପ୍ରଥମସ୍ତରର ଗଣତନ୍ତ୍ର

ନୁହେଁ, ମାତ୍ର ଏକ ନୂଆ, ବିଶିଷ୍ଟ ଚୀନା ଢଙ୍ଗର ଗଣତନ୍ତ୍ର—ତାହାର ନାମ ନୂତନଗଣତନ୍ତ୍ର । ଏହି ଐତିହାସିକ ଲକ୍ଷଣ କ୍ୱାପରି ଗଠିତ ହେଲା ? ଗତ ଶତାବ୍ଦୀରେ ଭିତରେ ମୂଳରୁ ଏ ଗଣତନ୍ତ୍ରଥିଲା ନା ତାହାପରେ ଏହାର ସୃଷ୍ଟି ହେଲା ?

ଉପରଠାଉପରଅ ଭାବେ ଚୀନ ଓ ପୃଥିବୀର ଐତିହାସିକ ବିକାଶ ସମ୍ବନ୍ଧରେ ଆଲୋଚନା କଲେ ଦେଖାଯିବ ଯେ ଅଫିମ ଯୁଦ୍ଧବେଳେ ବା ତାର ଠିକ୍ ପରବର୍ତ୍ତୀ ସମୟରେ ଏହି ଐତିହାସିକ ବୈଶିଷ୍ଟ୍ୟ ନଥିଲା କିନ୍ତୁ ୨ୟ ମହାଯୁଦ୍ଧପରେ ଓ ରୁଷ ଅକ୍ଟୋବର ବିପ୍ଳବ ପରେ ଏହା ରୂପନେଲା । ଏହାର ଗଠନ ଧାରାକୁ ଆଲୋଚନା କରିବାକୁ ବର୍ତ୍ତମାନ ଉଦ୍ୟମ କରିବା ।

ଏ କଥା ସ୍ୱତଃସିଦ୍ଧ ଯେ ଯଦି ବର୍ତ୍ତମାନ ଚୀନସମାଜର ପ୍ରକୃତି ଔପନିବେଶିକ, ଅର୍ଦ୍ଧ ଔପନିବେଶିକ ଓ ଅର୍ଦ୍ଧ ସାମନ୍ତବାଦୀ ତେବେ ଚୀନ ବିପ୍ଳବର ଧାରାକୁ ନିଶ୍ଚୟ ଦୁଇ ସ୍ତରରେ ବିଭାଗ କରିବାକୁ ହେବ । ପ୍ରଥମ ସ୍ତର ହେଉଛି ଔପନିବେଶିକ, ଅର୍ଦ୍ଧଔପନିବେଶିକ ଓ ଅର୍ଦ୍ଧ ସାମନ୍ତବାଦୀ ସମାଜକୁ ବଦଳାଇ ତା ସ୍ଥାନରେ ସ୍ୱାଧୀନ ଗଣତାନ୍ତ୍ରିକ ସମାଜ ପ୍ରତିଷ୍ଠା କରିବାକୁ ହେବ ଏବଂ ଦ୍ୱିତୀୟ ସ୍ତର ହେଉଛି ଏକ ସମାଜବାଦୀ ସମାଜ ପ୍ରତିଷ୍ଠା କରିବାଲାଗି ବିପ୍ଳବକୁ ଆଗକୁ ଠେଲିଦେବା । ଆମେ ଯାହା ବର୍ତ୍ତମାନ କହୁଛେ, ତାହା ଚୀନ ବିପ୍ଳବର ପ୍ରଥମ ସ୍ତର ।

ଏହି ପ୍ରଥମ ସ୍ତର ୧୮୪୦ର ଅଫିମଯୁଦ୍ଧ ବେଳୁଆରମ୍ଭହେଲା । ଅର୍ଥାତ୍ ଚୀନ ସମାଜ ତାର ମୂଳ ସାମନ୍ତବାଦୀ ରୂପବଦଳରେ ଯେତେବେଳେ ଅର୍ଦ୍ଧ ଔପନିବେଶିକ ଓ ଅର୍ଦ୍ଧ ସାମନ୍ତବାଦୀ ରୂପନେଲା

ସେତେବେଳେ ପ୍ରଥମ ସ୍ତରର ଆରମ୍ଭ । ଏହି ସମୟ ଭିତରେ ଆମର ତେପିଙ୍ଗ୍ ବିପ୍ଳବ, ଚୀନ-ଫରାସୀ ଯୁଦ୍ଧ, ଚୀନ-ଜାପାନଯୁଦ୍ଧ, ୧୮୯୮ର ସଂସ୍କାର ଆନ୍ଦୋଳନ, ୧୯୧୧ ମସୀହା ବିପ୍ଳବ, ମଇ ୪ର ଆନ୍ଦୋଳନ, ମଇ ୩୦ ଆନ୍ଦୋଳନ, ଉତ୍ତରମୁଖୀ ଅଭିଯାନ, କୃଷିବିପ୍ଳବ, ଡିସେମ୍ବର ୯ ଆନ୍ଦୋଳନ ଏବଂ ବର୍ତ୍ତମାନର ଜାପାନବିରୋଧୀ ଲଢେଇମାନ ହୋଇଛି । ଉପରେ ବର୍ଣ୍ଣିତ ସମସ୍ତ ଆନ୍ଦୋଳନକୁ ଗୋଟିଏ ନିର୍ଦ୍ଦିଷ୍ଟ ଦୃଷ୍ଟିରୁ ଦେଖିଲେ ସେଗୁଡ଼ିକ ଚୀନ ବିପ୍ଳବର ପ୍ରଥମ ସ୍ତରକୁ ହାସଲ କରିବାଲାଗି ହୋଇଥିଲା । ବିଭିନ୍ନ ସମୟରେ ଓ ବିଭିନ୍ନ ଶକ୍ତିର ଏହି ଆନ୍ଦୋଳନ ଗୁଡ଼ିକ ଏହି ପ୍ରଥମ ସ୍ତରକୁ ସଫଳ କରିବାକୁ ହୋଇଥିଲା-- ତା ଅର୍ଥ ସାମ୍ରାଜ୍ୟବାଦ ଓ ସାମନ୍ତବାଦକୁ ବିରୋଧ କରିବା ଏବଂ ଏକ ସ୍ୱାଧୀନ ଗଣତାନ୍ତ୍ରିକ ସମାଜ ପ୍ରତିଷ୍ଠା କରିବାଲାଗି ସଂଗ୍ରାମ କରିବା । ଏକ ବାସ୍ତବ ଦୃଷ୍ଟିରୁ ଦେଖିଲେ ୧୯୧୧ର ବିପ୍ଳବହିଁ ଏହି ଲକ୍ଷ୍ୟ ଲାଭ ଛଡ଼ା ଅନ୍ୟକିଛି ନୁହେଁ । ଏହି ବିପ୍ଳବର ସାମାଜିକ ଚରିତ୍ର ଦେଖିଲେ ଏହା ବୁର୍ଜୁୟା ଗଣତାନ୍ତ୍ରିକ ବିପ୍ଳବ ଏବଂ ସର୍ବହରାର ସମାଜବାଦୀ ବିପ୍ଳବ ନୁହେଁ । ଏହା ସଫଳ ହୋଇନାହିଁ ତେଣୁ ଆମର ଆହୁରି ଉଦ୍ୟମ ଲୋଡ଼ା । କାରଣ ଏହି ବିପ୍ଳବର ଶତ୍ରୁମାନେ ଏ ପର୍ଯ୍ୟନ୍ତ ମଧ୍ୟ ଖୁବ୍ ଶକ୍ତିଶାଳୀ ଅଛନ୍ତି । ସନୟାତ୍‌ସେନ ଯେଉଁ "ବିପ୍ଳବ" ଶବ୍ଦ ବ୍ୟବହାର କରି କହିଥିଲେ ଯେ "ବିପ୍ଳବ ଏପର୍ଯ୍ୟନ୍ତ ସଫଳ ହୋଇନାହିଁ ଏବଂ ଆମ କମ୍ରେଡମାନେ ଆହୁରି ଅସୀମ ଉଦ୍ୟମ କରନ୍ତୁ" ତାହା ଏହି ବୁର୍ଜୁୟା ଗଣତାନ୍ତ୍ରିକ ବିପ୍ଳବକୁ ସେ ଲକ୍ଷ୍ୟ କରିଥିଲେ ।

ପ୍ରଥମ ସାମ୍ରାଜ୍ୟବାଦୀ ବିଶ୍ୱଯୁଦ୍ଧ ଆରମ୍ଭ ହେବାପରେ ଓ ୧୯୧୭ ମସୀହା ରୁଷ ଅକ୍‌ଟୋବର ବିପ୍ଳବ ହେତୁ ପୃଥିବୀର ଛଭାଗରୁ ଭାଗେ

ଦେଶରେ ସମାଜବାଦୀ ରାଷ୍ଟ୍ର ପ୍ରତିଷ୍ଠିତ ହେଲାପରେ ଚୀନ ବୁର୍ଜୁଆ-ଗଣତାନ୍ତ୍ରିକ ବିପ୍ଳବରେ ଏକ ପରିବର୍ତ୍ତନ ଆସିଲା ।

ତାହାପୂର୍ବରୁ ଚୀନ-ବୁର୍ଜୁଆ-ଗଣତାନ୍ତ୍ରିକ-ବିପ୍ଳବ ପୃଥିବୀର ପୁରୁଣା ବୁର୍ଜୁଆ-ଗଣତାନ୍ତ୍ରିକ ବିପ୍ଳବର ପର୍ଯ୍ୟାୟଭୁକ୍ତ ଥିଲା ଏବଂ ତାହାର ଏକ ଅଂଶଥିଲା ।

କାହିଁକି ? ପ୍ରଥମ ସାମ୍ରାଜ୍ୟବାଦୀ ବିଶ୍ୱଯୁଦ୍ଧ ଏବଂ ବିଜୟୀ ସମାଜବାଦୀ ଅକ୍ଟୋବର ବିପ୍ଳବ ପୃଥିବୀର ଐତିହାସିକ ଗତିପଥକୁ ବଦଳାଇଦେଲା ଏବଂ ଦୁଇଟି ଐତିହାସିକ ସ୍ତର ଭିତରେ ତୀକ୍ଷ୍ଣ ସୀମାରେଖା ଟାଣିଦେଲା ।

ପୃଥିବୀର ଗୋଟିଏ ଅଂଶରେ ପୃଥିବୀ ପୁଞ୍ଜିବାଦ ଲୋପ ପାଇଲା (ପୃଥିବୀର ୬ ଭାଗରୁ ଭାଗେ ଅଞ୍ଚଳ) । ଅନ୍ୟ ଜାଗାରେ ପୃଥିବୀ ପୁଞ୍ଜିବାଦର କ୍ଷୟର ଲକ୍ଷଣମାନ ପରିଷ୍କାର ଦେଖାଗଲା । ଏଣିକି ପୃଥିବୀର ଯେଉଁ ପୁଞ୍ଜିବାଦୀ ଅଂଶ ରହିଲା ତାହା ପକ୍ଷରେ ଉପନିବେଶ ଓ ଅର୍ଦ୍ଧ ଉପନିବେଶ ଉପରେ ଅଧିକରୁ ଅଧିକ ନିର୍ଭର କରିବାଛଡ଼ା ଅନ୍ୟ କିଛି ବାଟ ରହିଲାନାହିଁ । ସେତେବେଳକୁ ଏକ ସମାଜବାଦୀ ରାଷ୍ଟ୍ର ପ୍ରତିଷ୍ଠିତ ହୋଇଯାଇଛି ଏବଂ ସେହିରାଷ୍ଟ୍ର ଉପନିବେଶ ଓ ଅର୍ଦ୍ଧ ଉପନିବେଶ ଗୁଡିକର ମୁକ୍ତି ସଂଗ୍ରାମରେ ସାହାଯ୍ୟ କରିବାର ଇଚ୍ଛା ପ୍ରକାଶ କରିଛି । ଏତେବେଳେ ପୁଞ୍ଜିବାଦୀ ରାଷ୍ଟ୍ରମାନଙ୍କର ସର୍ବହରାମାନେ ପ୍ରତିମୁହୂର୍ତ୍ତରେ ସାମ୍ରାଜ୍ୟବାଦୀ ସୋସାଲିଷ୍ଟ ପାର୍ଟିମାନଙ୍କର ପ୍ରଭାବରୁ ମୁକ୍ତ ହେଉଛନ୍ତି ଏବଂ ଉପନିବେଶ ଓ ଅର୍ଦ୍ଧ ଉପନିବେଶ ମାନଙ୍କର ମୁକ୍ତି ଆନ୍ଦୋଳନରେ ସାହାଯ୍ୟ କରିବାକୁ ଇଚ୍ଛା ପ୍ରକାଶ କରୁଛନ୍ତି । ଏପରି ଅବସ୍ଥାରେ ସାମ୍ରାଜ୍ୟବାଦ ବା ଆନ୍ତର୍ଜାତିକ ପୁଞ୍ଜିବାଦ

ବିରୁଦ୍ଧରେ ଉପନିବେଶ ଓ ଅର୍ଦ୍ଧ ଉପନିବେଶ ଗୁଡ଼ିକର କୌଣସି ବିପ୍ଳବ ପୁରୁଣା ବୁର୍ଜୁୟା-ଗଣତାନ୍ତ୍ରିକ ବିପ୍ଳବର ପର୍ଯ୍ୟାୟରେ ଆଉ ଆସିପାରେନା । ଏହା ଏକ ନୂଆ ପର୍ଯ୍ୟାୟରେ ଆସିବ । ଏହା ଆଉ ପୁରୁଣା ବୁର୍ଜୁୟା ବା ପୁଞ୍ଜିବାଦୀ ବିଶ୍ୱ ବିପ୍ଳବର ଅଂଶ ହୋଇପାରେନା ଏହା ନୂଆ ବିଶ୍ୱ ବିପ୍ଳବ—ଅର୍ଥାତ୍ ସର୍ବହରାର ସମାଜବାଦୀ ବିପ୍ଳବର ଅଂଶ । ଏହି ପ୍ରକାର ବିପ୍ଳବୀ ଉପନିବେଶ ଓ ଅର୍ଦ୍ଧ-ଉପନିବେଶକୁ ପୃଥିବୀ ପୁଞ୍ଜିବାଦର ପ୍ରତିବିପ୍ଳବୀ-ସାମ୍ମୁଖ୍ୟର ବନ୍ଧୁ ବୋଲି ବିଚାରିବା ଠିକ୍ ନୁହେଁ । ସେମାନେ ପୃଥିବୀ ସମାଜବାଦୀ ବିପ୍ଳବୀ ସାମ୍ମୁଖ୍ୟର ବନ୍ଧୁ ।

ସାମାଜିକ ବୈଶିଷ୍ଟ୍ୟ ଦୃଷ୍ଟିରୁ ଯଦିଚ ଏହି ଉପନିବେଶ ଓ ଅର୍ଦ୍ଧ ଉପନିବେଶ ବିପ୍ଳବର ପ୍ରଥମ ସ୍ତରର ପ୍ରଥମ ଯୁଗଟି ମୌଳିକ ଭାବେ ଏପର୍ଯ୍ୟନ୍ତ ବୁର୍ଜୁୟାଗଣତାନ୍ତ୍ରିକ ହୋଇ ରହିଛି ଏବଂ ପୁଞ୍ଜିବାଦର ବିକାଶ ପଥରୁ ବାଧା ପ୍ରତିବନ୍ଧକ ଦୂର କରିବା ହେଉଛି ଏହି ବିପ୍ଳବର ବାସ୍ତବ ଦାବୀ, ତଥାପି ଏହି ଧରଣର ବିପ୍ଳବ ପୁରୁଣା ଧରଣର ବିପ୍ଳବ ନୁହଁ । ପୁରୁଣା ଧରଣର ବିପ୍ଳବକୁ ପୁରା ପୁରି ବୁର୍ଜୁୟା ଶ୍ରେଣୀହିଁ ପରିଚାଳିତ କରେ, ଏବଂ କେବଳ ଏକ ପୁଞ୍ଜିବାଦୀ ସମାଜ ଗଢ଼ିବାକୁ ଚାହେଁ । କିମ୍ବା ବୁର୍ଜୁୟା ଶ୍ରେଣୀର ଏକନାୟକତ୍ୱର ଅଧୀନରେ ଏକ ଦେଶ ଗଢ଼ିବାକୁ ଚାହେଁ । ଏହା ଏକ ନୂଆ ଧରଣର ବିପ୍ଳବ । ଏହା ପୁରାପୁରି ବା ଆଂଶିକ ଭାବେ ସର୍ବହରା ଦ୍ୱାରା ପରିଚାଳିତ ହୁଏ । ଏକ ନୂଆ ଗଣତାନ୍ତ୍ରିକ ସମାଜ ଅର୍ଥାତ୍ ପ୍ରଥମ ସ୍ତରରେ ବିଭିନ୍ନ ବିପ୍ଳବୀ ଶ୍ରେଣୀମାନଙ୍କର ବନ୍ଧୁତା ଦ୍ୱାରା ଶାସିତ ଏକ ଦେଶ ପ୍ରତିଷ୍ଠା କରିବାକୁ ଚାହେଁ । ଶତ୍ରୁର ଅବସ୍ଥାର ପରିବର୍ତ୍ତନ ଓ ଏହି ବନ୍ଧୁତାର ବିଭିନ୍ନ ପରିବର୍ତ୍ତନ

ହେତୁ ଏହି ଧରଣର ବିପ୍ଳବର ଧାରାକୁ ବିଭିନ୍ନ ସ୍ତରରେ ଭାଗ କରିବାକୁ ହେବ । ମାତ୍ର ତାହାର ମୂଳ ପ୍ରକୃତିରେ କୌଣସି ପରିବର୍ତ୍ତନ ଆସିବ ନାହିଁ । ସମାଜବାଦୀ ବିପ୍ଳବ ଆସିବା ଯାଏ ତାହାର ମୂଳ ପ୍ରକୃତି ସେଇଆହିଁ ରହିବ ।

ଏ ଧରଣର ବିପ୍ଳବ ସାମ୍ରାଜ୍ୟବାଦ ଉପରେ ଏକ ପ୍ରଚଣ୍ଡ ଆକ୍ରମଣ ତେଣୁ ସାମ୍ରାଜ୍ୟବାଦୀମାନେ ଏହାକୁ ପ୍ରଶ୍ରୟ ଦେବେ ନାହିଁ, ବରଂ ବିରୋଧ କରିବେ । ଅନ୍ୟ ପକ୍ଷରେ ସମାଜବାଦ ଏହାକୁ ପ୍ରଶ୍ରୟ ଦିଏ ଏବଂ ସମାଜବାଦୀରାଷ୍ଟ୍ର ଓ ଅନ୍ତର୍ଜାତିକ—ସମାଜବାଦୀ ସର୍ବହରା ଏହାକୁ ସାହାଯ୍ୟ ଦିଏ ।

ତେଣୁ ଏ ଧରଣର ବିପ୍ଳବ ସର୍ବହରା—ସମାଜବାଦୀ ବିଶ୍ୱ ବିପ୍ଳବର ଏକ ଅଂଶ ।"ଚୀନ ବିପ୍ଳବ ବିଶ୍ୱ—ବିପ୍ଳବର ଏକ ଅଂଶ ।"

୧୯୨୪—୨୭ ମସିହାର ଚୀନର ମହାନ୍ ବିପ୍ଳବ ସମୟରେ ଏହି ନିର୍ଭୁଲ ତତ୍ତ୍ୱ (ଥିସିସ୍) ପେଶ୍ କରାଯାଇଥିଲା । କମ୍ୟୁନିଷ୍ଟମାନେ ଏହାକୁ ପ୍ରସ୍ତାବ କରିଥିଲେ ଓ ଯେଉଁମାନେ ସେତେବେଳର ସାମ୍ରାଜ୍ୟବାଦ ବିରୋଧୀ ଓ ସାମନ୍ତବାଦ ବିରୋଧୀ ସଂଗ୍ରାମରେ ଭାଗ ନେଉଥିଲେ) । ସେମାନେ ଏହାକୁ ଅନୁମୋଦନ କରିଥିଲେ । ମାତ୍ର ଏହି ତତ୍ତ୍ୱର ଅର୍ଥ ସେତେବେଳେ ଖୁବ୍ ବିକାଶ ପାଇ ନ ଥିଲା ଏବଂ ସେତେବେଳେ ଏହି ପ୍ରଶ୍ନର ଏକ ଝାପସା—ଅନୁଭବ ଆମେ ହାସଲ କରିଥିଲୁ । ମୋର ମନେ ପଡୁଛି ୧୯୨୫ ରେ ଚେଙ୍ଗ ଚୁଙ୍ଗ ମିଙ୍ଗ୍‌ଙ୍କ ବିରୁଦ୍ଧରେ ଅଭିଯାନ ଚଲାଇଲାବେଳେ ସ୍ୱତାଓଠାରେ ଚ୍ୟାଙ୍ଗକେଇସେକ୍ କହିଥିଲେ ଯେ "ଚୀନ-ବିପ୍ଳବ ବିଶ୍ୱ ବିପ୍ଳବର ଏକ ଅଂଶ ।"

ଏହି "ବିଶ୍ୱ—ବିପ୍ଳବ" ବୁର୍ଜୁୟାଶ୍ରେଣୀର ପୁରୁଣା ବିଶ୍ୱ ବିପ୍ଳବ ନୁହେଁ । ସେ ବିପ୍ଳବ ଅତୀତରେ ବିଲୟ ହୋଇଗଲାଣି । ଏହା ନୂଆ ବିଶ୍ୱ ବିପ୍ଳବ—ସମାଜବାଦୀ ବିପ୍ଳବ । ସେହିପରି ମଧ୍ୟ "ଅଂଶ" ଅର୍ଥ ପୁରୁଣା ବୁର୍ଜୁୟା—ବିପ୍ଳବର ଅଂଶ ନୁହେଁ । ଏହା ନୂଆ ସମାଜବାଦୀ ବିପ୍ଳବର ଅଂଶ । ଏହା ଅତି ମହାନ ପରିବର୍ତ୍ତନ । ବିଶ୍ୱ ଇତିହାସ ଏବଂ ଚୀନ ଇତିହାସରେ ଏପରି ପରିବର୍ତ୍ତନ ଆଉ କେବେ ହୋଇନାହିଁ ।

ଷ୍ଟାଲିନ୍‌ଙ୍କ ନିର୍ଭୁଲ ତତ୍ତ୍ୱକୁ ଧରି ଚୀନ କମ୍ୟୁନିଷ୍ଟମାନେ ଏହି ନିର୍ଭୁଲ ତତ୍ତ୍ୱ ଥିସିସ ବାଡିଥିଲେ ।

୧୯୧୮ ମସୀହାରେ ଅକ୍‌ଟୋବର ବିପ୍ଳବର ପ୍ରଥମ ବାର୍ଷିକୀ ଉପଲକ୍ଷେ ଲେଖିଥିବା ପ୍ରବନ୍ଧରେ ଷ୍ଟାଲିନ୍ କହିଥିଲେ ।

"ଅକ୍‌ଟୋବର ବିପ୍ଳବର ମହାନ୍ ଆନ୍ତର୍ଜାତିକ ତାତ୍ପର୍ଯ୍ୟ ମୁଖ୍ୟଭାବେ ହେଉଛି—

(୧) "ଜାତୀୟ ପ୍ରଶ୍ନର ପରିସରକୁ ଏହି ବିପ୍ଳବ ବ୍ୟାପକ କରି ଦେଇଛି । ଏବଂ ଜାତୀୟ ନିର୍ଯାତନାକୁ ପ୍ରତିରୋଧ କରିବାର ନିର୍ଦ୍ଦିଷ୍ଟ ପ୍ରଶ୍ନକୁ ଏହି ବିପ୍ଳବ ନିର୍ଯାତିତ ଦେଶ, ଉପନିବେଶ ଓ ଅର୍ଦ୍ଧ ଉପନିବେଶକୁ ସାମ୍ରାଜ୍ୟବାଦ ଠାରୁ ମୁକ୍ତ କରିବାର ସାଧାରଣ ପ୍ରଶ୍ନରେ ପରିଣତ କରି ଦେଇଛି ।

(୨) ଏହା ବ୍ୟାପକ ସମ୍ଭାବନା ଉନ୍ମୁକ୍ତ କରିଦେଇଛି ଏବଂ ସ୍ୱାଧୀନତା ହାସଲ କରିବାର ସଠିକ ମାର୍ଗକୁ ପ୍ରକାଶ କରି ଦେଇଛି । ତେଣୁ ପାଶ୍ଚାତ୍ୟ ଓ ପ୍ରାଚ୍ୟର ଦଳିତ ଦେଶ-

ମାନଙ୍କର ମୁକ୍ତି ଆନ୍ଦୋଳନକୁ ବହୁ ପରିମାଣରେ ସାହାଯ୍ୟ କରିଛି । ସାମ୍ରାଜ୍ୟବାଦ ବିରୁଦ୍ଧରେ ସଫଳ ସଂଗ୍ରାମର ସାଧାରଣ ସ୍ରୋତରେ ସେମାନଙ୍କୁ ଏକଜୁଟ କରାଇଛି ।

(୩) ତେଣୁ ଏହା ସମାଜବାଦୀ ପାଶ୍ଚାତ୍ୟ ଓ ପରାଧୀନ ପ୍ରାଚ୍ୟ ଭିତରେ ସେତୁବନ୍ଧ ବାନ୍ଧି ଦେଇଛି । ସାମ୍ରାଜ୍ୟବାଦ ବିରୁଦ୍ଧରେ ବିପ୍ଳବ ସମୂହର ଏକ ସାମ୍ମୁଖ୍ୟ ଗଢିଛି । ସେହି ସାମ୍ମୁଖ୍ୟ ରୁଷ ବିପ୍ଳବର ମଧ୍ୟଦେଇ ପାଶ୍ଚାତ୍ୟ ଜଗତ୍‌ର ଶ୍ରମିକଶ୍ରେଣୀଠାରୁ ପ୍ରାଚ୍ୟ ଜଗତ୍‌ର ପରାଧୀନ ଜାତିଗୁଡ଼ିକ ଯାଏ ବ୍ୟାପିଛି ।" (ଜେ. ଭି. ଷ୍ଟାଲିନ୍. "ଅକ୍ଟୋବର ବିପ୍ଳବ ଓ ଜାତୀୟ ସମସ୍ୟା;" ମାର୍କସ୍‌ବାଦ ଏବଂ ଜାତୀୟ ଓ ଔପନିବେଶିକ ସମସ୍ୟା—ଲରେନସ୍ ଏଣ୍ଡ ଉଇଶାର୍ଟ, ୧୯୪୭ ପୃ ୭୬)

ସେହି ପ୍ରବନ୍ଧ ପ୍ରକାଶ ହେଲାଦିନୁଁ ଷ୍ଟାଲିନ୍ ବାରମ୍ବାର ଔପନିବେଶିକ ଓ ଅର୍ଦ୍ଧ ଔପନିବେଶିକ ବିପ୍ଳବର ତତ୍ତ୍ୱକୁ ଆହୁରି ବିକାଶ କରେଇଛନ୍ତି । ଏହାକୁ ପୁରୁଣା ଧରଣରୁ ଅଲଗା କରିଛନ୍ତି ଓ ସର୍ବହରା ସମାଜବାଦୀ ବିପ୍ଳବର ଅଂଶ ହିସାବରେ ଏହାକୁ ରୂପାନ୍ତରିତ କରିଛନ୍ତି । ୧୯୨୫ ଜୁନ ୩୦ ତାରିଖରେ ସେ ଏହି ତତ୍ତ୍ୱକୁ ଆହୁରି ପରିଷ୍କାର ଓ ଅଧିକ ସଠିକ ଭାବେ ବାଢିଛନ୍ତି । ସେତେବେଳର ଯୁଗୋସ୍ଲୋଭିଆ ଜାତୀୟବାଦୀମାନଙ୍କ ସଙ୍ଗେ ଷ୍ଟାଲିନ୍‌ଙ୍କ ବାଦାନୁବାଦ ବେଳେ ଏହା ସେ ଲେଖିଥିଲେ । ସେ ପ୍ରବନ୍ଧର ନାମ ହେଉଛି "ପୁନର୍ବାର ଜାତୀୟ ସମସ୍ୟା" । ତାହାର ଏକ ଅଂଶ ଏଠି ଦିଆଗଲା ।

"୧୯୧୨ରେ ଷ୍ଟାଲିନ୍ ଲେଖିଥିବା ମାର୍କସ୍‌ବାଦ ଏବଂ ଜାତୀୟ ସମସ୍ୟାର ଏକ ଫଳକୁ କମ୍ରେଡ଼ ସେମିର୍ ଉଲ୍ଲେଖ କରିଛନ୍ତି । ସେ ପ୍ରବନ୍ଧରେ ଅଛି ଯେ, ଜାତୀୟ ସଂଗ୍ରାମ......ହେଉଛି ବୁର୍ଜୁୟା ଶ୍ରେଣୀମାନଙ୍କ ଅପଣା ଅପଣା ଭିତରେ ସଂଗ୍ରାମ । ଏହାଫଳରେ ବର୍ତ୍ତିମାନ ଯୁଗର ଜାତୀୟ ଅନ୍ଦୋଳନର ସାମାଜିକ ତାତ୍ପର୍ଯ୍ୟ ଦେଖାଇ ଯେଉଁ ନିର୍ଦ୍ଧାରଣ ସେମିର୍ ବାଢିଛନ୍ତି ତାହା ନିର୍ଭୁଲ ବୋଲି ସେ ପ୍ରମାଣ କରିବାକୁ ବସ୍ତୁତଃ ଚେଷ୍ଟା କରିଛନ୍ତି । ମାତ୍ର ଷ୍ଟାଲିନଙ୍କର ପୁସ୍ତିକାଟି ସାମ୍ରାଜ୍ୟବାଦୀ ଯୁଦ୍ଧପୂର୍ବରୁ ଲେଖାହୋଇଥିଲା । ସେତେବେଳେ ଜାତୀୟ ପ୍ରଶ୍ନ ଏତେ ବିଶ୍ୱବ୍ୟାପୀ ଗୁରୁତ୍ୱ ମାର୍କସ୍‌ବାଦୀଙ୍କ ଦୃଷ୍ଟିରେ ପଡ଼ିନଥିଲା । ଏବଂ ମାର୍କ୍‌ସିବାଦୀଙ୍କର ମୌଳିକଦାବୀ ଆତ୍ମ ନିୟନ୍ତ୍ରଣ ଅଧିକାର ସେତେବେଳେ ସର୍ବହରା ବିପ୍ଳବର ଅଂଶରୂପେ ପରିଗଣିତ ନ ହୋଇ ବୁର୍ଜୁୟାଗଣତାନ୍ତ୍ରିକ ବିପ୍ଳବର ଅଂଶ ବୋଲି ଗଣା ହେଉଥିଲା । ସେତେବେଳଠାରୁ ବର୍ତ୍ତମାନ ଯେ ଅନ୍ତର୍ଜାତିକ ପରିସ୍ଥିତି ସଂପୂର୍ଣ୍ଣଭାବେ ବଦଳି ଯାଇଛି ଏକଥା ଏଡିଦେବା ଅଜ୍ଞତା ହେବ । ଆନ୍ତ୍ରମଧ୍ୟ ଏକ ପକ୍ଷରେ ଯୁଦ୍ଧ ଓ ଅନ୍ୟ ପକ୍ଷରେ ଅକ୍ଟୋବର ବିପ୍ଳବ ଯେ ଜାତୀୟ ପ୍ରଶ୍ନକୁ ବୁର୍ଜୁୟାଗଣତାନ୍ତ୍ରିକ ବିପ୍ଳବର ଏକ ଅଂଶରୁ ସର୍ବହରା ସମାଜବାଦୀ ବିପ୍ଳବର ଏକଅଂଶରେ ପରିଣତ କରି ଦେଇଛି ଏହାକୁ ଏଡ଼ିଦେବା ହାସ୍ୟାସ୍ପଦ ହେବ । ୧୯୧୬ ମସିହା ଅକ୍ଟୋବର ମାସରେ ଲେନିନ ତାଙ୍କର ପ୍ରବନ୍ଧ "ଆତ୍ମନିୟନ୍ତ୍ରଣ ସଂବନ୍ଧୀୟ ଅଲୋଚନାର ସଂକ୍ଷିପ୍ତ ସାର" ନାମକ ଲେଖାରେ କହିଛନ୍ତି ଯେ ଜାତୀୟ ପ୍ରଶ୍ନର ମୌଳିକ ବସ୍ତୁ, ଅର୍ଥାତ୍ ଆତ୍ମନିୟନ୍ତ୍ରଣ ଅଧିକାର, ଆଉ ସାଧାରଣ ଗଣତାନ୍ତ୍ରିକ ବିପ୍ଳବର ଅଂଶ ହୋଇନାହିଁ । ତାହା ସାଧାରଣ ସର୍ବହରା ସାମାଜବାଦୀ ବିପ୍ଳବର ଅବିଚ୍ଛେଦ୍ୟ ଅଂଶ ଭାବେ ରୂପାନ୍ତରିତ ହୋଇଗଲାଣି । ଜାତୀୟ ପ୍ରଶ୍ନ ସମ୍ବନ୍ଧରେ

ଲେନିନ୍‌ଙ୍କର ପରବର୍ତ୍ତୀ ଲେଖା କିମ୍ବା ଋଷ କମ୍ୟୁନିଜମ୍‌ର ଅନ୍ୟାନ୍ୟ ପ୍ରତିନିଧିଙ୍କ ଲେଖାକୁ ମୁଁ ଆଉ ଉଦ୍ଧାର କରୁନାହିଁ । ଏହିସବୁ ଦୃଷ୍ଟିରୁ ବର୍ତ୍ତମାନ ଏକ ନୂଆ ଐତିହାସିକ ପରିସ୍ଥିତି ଫଳରେ ଏକ ନୂଆ ଯୁଗ, ଅର୍ଥାତ୍ ବିଶ୍ୱ ସର୍ବହରା ବିପ୍ଳବର ଯୁଗରେ ଆମେ ପହଞ୍ଚିଲେଣି । ସେତେବେଳର ବୁର୍ଜୁଆ ଗଣତାନ୍ତ୍ରିକ ବିପ୍ଳବ ଅମଳରେ ଷ୍ଟାଲିନ୍‌ଙ୍କ ଲେଖାର ଗୋଟିଏ ପଂକ୍ତିକୁ କମ୍ରେଡ଼ ସେମିଚ୍ ଯେ ଉଦ୍ଧାର କରିଛନ୍ତି ତାହାର ବ୍ୟାଖ୍ୟା କ'ଣ ହୋଇପାରେ ? ତାହାର ଏକମାତ୍ର ବ୍ୟାଖ୍ୟା ହେଉଛି ଯେ କମ୍ରେଡ଼ ସେମିଚ୍ ସ୍ଥାନ, କାଳ ଏବଂ ବାସ୍ତବ ଐତିହାସିକ ଅବସ୍ଥାକୁ ଲକ୍ଷ୍ୟ ନ ରଖି ତାକୁ ଉଦ୍ଧାର କରିଛନ୍ତି । ତେଣୁ ଦ୍ୱନ୍ଦ୍ୱବାଦର ପ୍ରାଥମିକ ଦାବୀ ଗୁଡ଼ିକୁ ସେ ଅସ୍ୱୀକାର କରିଛନ୍ତି ଏବଂ ଗୋଟିଏ ଐତିହାସିକ ପରିସ୍ଥିତିରେ ଯାହା ଠିକ୍ ତାହା ଅନ୍ୟ ଏକ ଐତିହାସିକ ପରିସ୍ଥିତିରେ ଯେ ଭୁଲ ହୋଇପାରେ ଏ ସତ୍ୟକୁ ଧରି ନାହାନ୍ତି.........”(ଜେ• ଭି• ଷ୍ଟାଲିନ ପୁନର୍ବାର ଜାତୀୟ ପ୍ରଶ୍ନ; ମାର୍କସ୍‌ବାଦ ଓ ଜାତୀୟ ପ୍ରଶ୍ନ ଲରେନସ୍ ଏଣ୍ଡ ଉଇଶାର୍ଟ ୧୯୪୭ ପୃ ୨୨୫-୬)

ଏଥିରୁ ଆମେ ଜାଣିଲେ ଯେ ଦୁଇଟି ରକମର ବିପ୍ଳବ ଅଛି । ପ୍ରଥମଟି ବୁର୍ଜୁଆ ଅଥବା ପୁଞ୍ଜିବାଦୀ ପର୍ଯ୍ୟାୟ ଭୁକ୍ତ । ୧୯୧୪ର ପ୍ରଥମ ସାମ୍ରାଜ୍ୟବାଦୀ ମହାସମର ଆରମ୍ଭ ହେବାଦିନୁଁ ଏବଂ ବିଶେଷତଃ ୧୯୧୭ ଅକ୍ଟୋବର ବିପ୍ଳବ ଦିନୁଁ ଏହି ପର୍ଯ୍ୟାୟ ଅତୀତର ବସ୍ତୁ ହୋଇଗଲାଣି । ସେହିଦିନଠାରୁ ଦ୍ୱିତୀୟ ପର୍ଯ୍ୟାୟ ଭୁକ୍ତ ବିପ୍ଳବ ଆରମ୍ଭ ହୋଇଛି । ତାହା ହେଉଛି ସର୍ବହରା ଅଥବା ସମାଜବାଦୀ ବିଶ୍ୱବିପ୍ଳବ । ଏ ପର୍ଯ୍ୟାୟଭୁକ୍ତ ବିପ୍ଳବର ପ୍ରଧାନ ଶକ୍ତି

ନେଉଛନ୍ତି ପୁଞ୍ଜିବାଦୀ—ଦେଶମାନଙ୍କର ସର୍ବହରାଶ୍ରେଣୀ ଏବଂ ଉପନିବେଶ ଓ ଅର୍ଦ୍ଧ ଉପନିବେଶର ଦଳିତ ଜନତା ଉକ୍ତ ସର୍ବହରାଶ୍ରେଣୀର ବନ୍ଧୁ। ବିପ୍ଳବରେ ଭାଗ ନେଉଥିବା ଦଳିତ ଜନତା ଯେଉଁ ଶ୍ରେଣୀ ବା ଯେଉଁ ପାର୍ଟିର ଅନ୍ତର୍ଭୁକ୍ତ ହୁଅନ୍ତୁ ନା କାହିଁକି ଏବଂ ସେମାନେ ସଚେତନ ଭାବେ କିମ୍ବା ମନୋଗତ ଭାବେ ଏହାର ତାତ୍ପର୍ଯ୍ୟ ବୁଝନ୍ତୁ ବା ନବୁଝନ୍ତୁ, ମାତ୍ର ସେମାନେ ସାମ୍ରାଜ୍ୟବାଦ ବିରୋଧୀ ଥିବାଯାଏ, ସେମାନଙ୍କର ବିପ୍ଳବ ସର୍ବହରା ସମାଜବାଦୀ ବିଶ୍ୱବିପ୍ଳବର ଏକ ଅଂଶ ଓ ସେମାନେ ନିଜେ ନିଜେ ସେହି ବିପ୍ଳବର ବନ୍ଧୁ।

ଚୀନ ବିପ୍ଳବର ତାତ୍ପର୍ଯ୍ୟ ବର୍ତ୍ତମାନ ଖୁବ୍ ବଢିଯାଇଛି। ଯେଉଁ ଅବସ୍ଥାରେ ଏହି ବିପ୍ଳବ ଘଟୁଛି ସେହି ଅବସ୍ଥାହିଁ ତାର ତାତ୍ପର୍ଯ୍ୟ ବଢିଯିବାର କାରଣ। ସେ ଅବସ୍ଥା ନିମ୍ନପ୍ରକାରର। ପୁଞ୍ଜିବାଦର ରାଜନୈତିକ ଓ ଅର୍ଥନୈତିକ ସଂକଟ ପୃଥିବୀକୁ ପ୍ରତିପାଦରେ ଦ୍ୱିତୀୟ ସାମ୍ରାଜ୍ୟବାଦୀଯୁଦ୍ଧ ଆଡ଼କୁ ଘେନିଅସିଛି। ସୋଭିଏଟ୍ ୟୁନିଅନ ମଧ୍ୟବର୍ତ୍ତୀକାଳର ସମାଜବାଦ ଅବସ୍ଥାରୁ ସାମ୍ୟବାଦ ବା କମ୍ୟୁନିଜମ୍ ଅବସ୍ଥାକୁ ଗତି କରୁଛି ଏବଂ ସର୍ବହରା ଶ୍ରେଣୀ, ଏବଂ ଦୁନିଆର ସମସ୍ତ ବିପ୍ଳବୀ ଦଳିତ ଜନସାଧାରଣଙ୍କୁ ସାହାଯ୍ୟ ଦେବା ଓ ନେତୃତ୍ୱ ଦେବାର ଶକ୍ତି ସୋଭିଏଟ୍ ୟୁନିଅନ ହାସଲ କରିଛି। ପୁଞ୍ଜିବାଦୀ ଦେଶମାନଙ୍କରେ ଥିବା ସର୍ବହରା ଶକ୍ତି ଦିନୁଁ ଦିନ ଶକ୍ତିଶାଳୀ ହୋଇ ଉଠୁଛି ଏବଂ କମ୍ୟୁନିଷ୍ଟପାର୍ଟି, ସର୍ବହରାଶ୍ରେଣୀ, କୃଷକଶ୍ରେଣୀ, ବୁଦ୍ଧିଜୀବୀ ଓ ନିମ୍ନମଧ୍ୟବର୍ତ୍ତିଶ୍ରେଣୀ ମାନେ ଏକ ବିରାଟ ସ୍ୱାଧୀନ ରାଜନୈତିକ ଶକ୍ତିହିସାବରେ ଛିଡ଼ା ହେଲେଣି। ଏପରି ସମୟରେ ଚୀନ ବିପ୍ଳବର ବିଶ୍ୱ-ତାତ୍ପର୍ଯ୍ୟ ଯେ ଖୁବ୍ ମାତ୍ରାରେ

ବଢିଯାଇଛୁ ତାହା ଗ୍ରହଣ କରିବା ଠିକ୍ ନୁହଁକି ? ଆମେ ତାହା କରିବା ଠିକ୍ । ଚୀନବିପ୍ଳବ ବିଶ୍ୱବିପ୍ଳବର ଏକ ମହାନ୍ ଅଂଶ ।

ସାମାଜିକ ପ୍ରକୃତି ଦୃଷ୍ଟିରୁ ଚୀନବିପ୍ଳବର ପ୍ରଥମସ୍ତର (ଯାହାକି ବିଭିନ୍ନ ସ୍ତେଷ୍ଟସ୍ତରରେ ବିଭକ୍ତ) ଏକ ନୂଆ ବୁର୍ଜୁୟା ଗଣତାନ୍ତ୍ରିକ ବିପ୍ଳବ; ନୂତନତମ ସମାଜବାଦୀ ବିପ୍ଳବ ନୁହେଁ । ଅବଶ୍ୟ ଅତୀତର ବହୁକାଳରୁ ନୂଆ ବୁର୍ଜୁୟା ଗଣତାନ୍ତ୍ରିକ ବିପ୍ଳବ ଏହି ସର୍ବହରା ସମାଜବାଦୀ ବିପ୍ଳବର ଅଂଶ ଏବଂ ଏକମହାନ୍ ଅଂଶ ହୋଇ ଆସିଛି ଓ ବର୍ତ୍ତମାନ ଏକ ମହାନ୍ ବନ୍ଧୁ ହୋଇ ଛିଡ଼ା ହୋଇଛି ।

ଏହି ବିପ୍ଳବର ପ୍ରଥମ ସ୍ତରର ପ୍ରଥମ ଯୁଗରେ ବୁର୍ଜୁୟାଦ୍ୱାରା ପରିଚାଳିତ ଏକ ପୁଞ୍ଜିବାଦୀସମାଜ କେବେହେଁ ବସାଯିବନାହିଁ କି ବସାଯାଇ ନପାରେ । ବିଭିନ୍ନ ବିପ୍ଳବୀ ଶ୍ରେଣୀର ସହଯୋଗିତାରେ ପରିଚାଳିତ ଏକ ନୂଆ ଗଣତନ୍ତ୍ର ଏହି ବିପ୍ଳବର ପ୍ରଥମସ୍ତରର ପ୍ରଥମ ଯୁଗରେ ପ୍ରତିଷ୍ଠିତ ହେବ । ଏହି ସ୍ତର ସଫଳ ହେଲାପରେ ଦ୍ୱିତୀୟ ସ୍ତରର ବିକାଶ ଘଟେଇବାକୁ ହେବ—ତାଫଳରେ ଚୀନରେ ସମାଜବାଦୀ ସମାଜ ପ୍ରତିଷ୍ଠା କରାଯିବ ।

ବର୍ତ୍ତମାନ ଚୀନବିପ୍ଳବର ଏହା ସର୍ବପ୍ରଧାନ ମୌଳିକ ବୈଶିଷ୍ଟ୍ୟ—ଏହି ବିପ୍ଳବ ଗତ ୨୦ବର୍ଷର ବୈପ୍ଳବିକ ଧାରାରେ ଗତି କରିଛି । (ମଇ ୪ ତାରିଖ ଆନ୍ଦୋଳନଠାରୁ ଯାହାର ଆରମ୍ଭ) ଏବଂ ଏହାହିଁ ତାର ଜୀବନ୍ତ, ବାସ୍ତବ ବିଷୟବସ୍ତୁ ।

---

—୫—

# ନୂତନ ଗଣତନ୍ତ୍ରର ରାଜନୀତି

ଚୀନର ବିପ୍ଳବ ଦୁଇଟି ଐତିହାସିକ ସ୍ତରରେ ବିଭକ୍ତ । ପ୍ରଥମ ସ୍ତରଟି ନୂତନ ଗଣତାନ୍ତ୍ରିକ ବିପ୍ଳବର ସ୍ତର । ଚୀନ ବିପ୍ଳବର ଏହାହିଁ ନୂଆ ଐତିହାସିକ ବୈଶିଷ୍ଟ୍ୟ । ମାତ୍ର ଚୀନର ଅଭ୍ୟନ୍ତରୀଣ ରାଜନୈତିକ, ଓ ଅର୍ଥନୈତିକ ସଂପର୍କ ଗୁଡ଼ିକରେ କିପରି ଏହି ବୈଶିଷ୍ଟ୍ୟ ବାସ୍ତବ କ୍ଷେତ୍ରରେ ପ୍ରକାଶ ପାଇଛି ? ତାହାକୁ ଏଠି ବୁଝାଇବା ଦରକାର ।

୧୯୧୯ ମସିହାର ମଇ ଚୌଠ ଆନ୍ଦୋଳନ ( ୧୯୧୪ ପ୍ରଥମ ମହାସମର ଓ ୧୯୧୭ ଋଷ ଅକ୍ଟୋବର ବିପ୍ଳବ ପରେ ଏହା ଘଟିଥିଲା ) ପୂର୍ବରୁ ଚୀନ ବୁର୍ଜୁଆ ଗଣତାନ୍ତ୍ରିକ ବିପ୍ଳବର ରାଜନୈତିକ ପରିଚାଳନା ଚୀନର ପେଟିବୁର୍ଜୁଆ ଏବଂ ବୁର୍ଜୁଆ ଶ୍ରେଣୀ (ସେମାନଙ୍କର ବୁଦ୍ଧିଜୀବୀ ଲୋକ ) ହାତରେ ଥିଲା । ସେତେବେଳେ ଚୀନ ସର୍ବହରାଶ୍ରେଣୀ ରାଜନୀତି କ୍ଷେତ୍ରରେ ଏକ ସଚେତନ ସ୍ୱାଧୀନ ଶକ୍ତି ହିସାବରେ ଭାଗ ନେଇ ନ ଥିଲା । ତାହା ପେଟିବୁର୍ଜୁଆ ଓ ବୁର୍ଜୁଆ ଶ୍ରେଣୀର ଅନୁଗାମୀ ମାତ୍ର ଥିଲା । ୧୯୧୧ ବିପ୍ଳବରେ ସର୍ବହରା ଏହି ଭୂମିକା ନେଇଥିଲା ।

କିନ୍ତୁ ମଇ ଚୌଠ ଆନ୍ଦୋଳନ ପରେ ଚୀନ ବୁର୍ଜୁଆ ଗଣତାନ୍ତ୍ରିକ ବିପ୍ଳବର ରାଜନୈତିକ ପରିଚାଳକମାନଙ୍କ ଭିତରେ ବିପ୍ଳବରେ ଯୋଗ ଦେଇଥିବା କେତେକ ସର୍ବହରା ଶ୍ରେଣୀର ଲୋକ ଥିଲେ । ସେତେବେଳକୁ ଚୀନ ସର୍ବହରା ଶ୍ରେଣୀ ନିଜ ବିକାଶ ହେତୁ ଓ

ରୁଷ ବିପ୍ଳବର ପ୍ରଭାବରେ ଦ୍ରୁତଭାବରେ ଏକ ସଚେତନ ସ୍ୱାଧୀନ ଶକ୍ତି ହିସାବରେ ଛିଡ଼ା ହେଲା । "ସାମ୍ରାଜ୍ୟବାଦ ଧ୍ୱଂସ ହେଉ" ଏହି ରଣଧ୍ୱନି ଓ ଚୀନ ବୁର୍ଜୁୟା ଗଣତାନ୍ତ୍ରିକ ବିପ୍ଳବର ସମସ୍ତ ପୂର୍ଣ୍ଣାଙ୍ଗ କାର୍ଯ୍ୟକ୍ରମକୁ ଚୀନ କମ୍ୟୁନିଷ୍ଟପାର୍ଟି ପ୍ରବର୍ତ୍ତିନ କଲା ଏବଂ କୃଷି ବିପ୍ଳବର ସଫଳତା ଲାଗି ଚୀନ କମ୍ୟୁନିଷ୍ଟପାର୍ଟି ଏକାକୀ ସଂଗ୍ରାମ ଚଳାଇଲା ।

ଚୀନ ବୁର୍ଜୁୟା ହେଉଚନ୍ତି ଏକ ଔପନିବେଶିକ ଓ ଅର୍ଦ୍ଧ-ଔପନିବେଶିକ ବୁର୍ଜୁୟାଶ୍ରେଣୀ । ସେମାନେ ସାମ୍ରାଜ୍ୟବାଦୀଙ୍କ ଦ୍ୱାରା ନିର୍ଯାତିତ । ତେଣୁ ସାମ୍ରାଜ୍ୟବାଦୀ ଯୁଗରେ ମଧ୍ୟ ସାମ୍ରାଜ୍ୟବାଦ ଓ ତାର ସଙ୍ଗେ ସଙ୍ଗେ ନିଜ ଦେଶର ଅମଲାତାନ୍ତ୍ରିକ ପେଶାଦାର ଲଢ଼େଇ-ରାଜକୁ ବିରୋଧ କରିବାର ବୈପ୍ଳବିକ ବୈଶିଷ୍ଟ୍ୟ ଚୀନ ବୁର୍ଜୁୟା ଶ୍ରେଣୀ କିଛିକାଳ ପାଇଁ କିଛି ପରିମାଣରେ ରଖିଛି । ତାହାର ଉଦାହରଣ ୧୯୧୧ ମସୀହା ବିପ୍ଳବ, ଓ ଉତ୍ତରମୁଖୀ ଅଭିଯାନ । ସେତେବେଳେ ବୁର୍ଜୁୟା ଶ୍ରେଣୀ କ୍ଷମତାରେ ନଥିଲା ଏବଂ ଶତ୍ରୁର ବିରୋଧ କରିବାର ଇଚ୍ଛାହେତୁ ବୁର୍ଜୁୟା ଶ୍ରେଣୀ ସର୍ବହରା ଓ ପେଟି ବୁର୍ଜୁୟାଶ୍ରେଣୀ ସଙ୍ଗେ ମେଣ୍ଟ ଗଢ଼ି ପାରୁଥିଲା । ଚୀନ ବୁର୍ଜୁୟା ଓ ଜାର ଅମଳର ରୁଷ ବୁର୍ଜୁୟା ଭିତରେ ଏହାହିଁ ପାର୍ଥକ୍ୟ । ଜାରଶାହୀ ରୁଷ ସେତେବେଳେ ଏକ ଯୁଦ୍ଧବାଦୀ-ସାମନ୍ତବାଦୀ ଓ ସାମ୍ରାଜ୍ୟବାଦୀ ଦେଶଥିଲା ଏବଂ ଅନ୍ୟମାନଙ୍କ ଉପରେ ଅତ୍ୟାଚାର କରୁଥିଲା । ରୁଷ ବୁର୍ଜୁୟା ଶ୍ରେଣୀର କୌଣସି ବୈପ୍ଳବିକତା ନଥିଲା, ତେଣୁ ବୁର୍ଜୁୟା ବିରୁଦ୍ଧରେ ସଂଗ୍ରାମ କରିବା ହିଁ ସର୍ବହରାର କାମଥିଲା; ତାସଙ୍ଗେ ମେଣ୍ଟ ଗଢ଼ିବା ନୁହଁ । ମାତ୍ର ଅନ୍ୟମାନଙ୍କ ଦ୍ୱାରା ନିଯାତିତ ଔପନିବେଶିକ ଓ ଅର୍ଦ୍ଧ ଔପନିବେଶିକ

ଚୀନଦେଶର ବୁର୍ଜୁୟା ଶ୍ରେଣୀ କେତେକାଳ ପାଇଁ ଏବଂ କିଛି ପରିମାଣରେ—ବିପ୍ଳବୀ । ତେଣୁ ସର୍ବହରାର କାମ ବୁର୍ଜୁୟାର ଏହି ବୈପ୍ଳବିକ ଚରିତ୍ରକୁ ଅବହେଳା କରିବା ନୁହଁ କିମ୍ବା ସାମ୍ରାଜ୍ୟବାଦ ଓ ଅମଲାତାନ୍ତ୍ରିକ ପେଶାଦାର ଲଢେଇ ରାଜ ବିରୁଦ୍ଧରେ ତା ସଙ୍ଗେ ମେଣ୍ଟ ବାନ୍ଧିବାର ଯେ ସମ୍ଭାବନା ଅଛି ତାକୁ ଅବହେଳା କରିବା ନୁହଁ ।

ତା ସଙ୍ଗେ ସଙ୍ଗେ ମଧ୍ୟ ଜାଣିବା ଦରକାର ଯେ ଚୀନ ବୁର୍ଜୁୟା ଶ୍ରେଣୀ ଏକ ଔପନିବେଶିକ ଓ ଅର୍ଦ୍ଧ ଔପନିବେଶିକ ଦେଶର ବୁର୍ଜୁୟା ହୋଇଥିବାରୁ ରାଜନୈତିକ ଓ ଅର୍ଥନୈତିକ ଭାବେ ସେ ଅତି ଦୁର୍ବଳ। ଏବଂ ଆଉ ଏକ ବୈଶିଷ୍ଟ୍ୟ ମଧ୍ୟ ତାଠାରେ ଦେଖାଯାଏ ସେ ବୈଶିଷ୍ଟ୍ୟ ହେଉଛି ବିପ୍ଳବର ଶତ୍ରୁ ସଙ୍ଗେ ଅପୋଷ କରିଦେବାର ବୈଶିଷ୍ଟ୍ୟ । ଚୀନ ବୁର୍ଜୁୟା, ବିଶେଷ ଭାବେ ବଡ଼ ବୁର୍ଜୁୟା ବିପ୍ଳବର ଧାରା ଭିତରେ ବି ସାମ୍ରାଜ୍ୟବାଦ ସଙ୍ଗେ ସଂପୂର୍ଣ୍ଣ ସଂପର୍କ ଛିଣ୍ଡାଇବାକୁ ଆଦୌ ଇଚ୍ଛୁକ ନୁହଁ । ଏବଂ ଗ୍ରାମଗହଳରେ ଭୂମି ଶୋଷଣରେ ନିବିଡ଼ଭାବେ ସଂପୃକ୍ତ ଥିବାରୁ ସାମ୍ରାଜ୍ୟବାଦ ଓ ସାମନ୍ତବାଦକୁ ଲୋପ କରିଦବାକୁ ମଧ୍ୟ ଇଚ୍ଛୁକ ନୁହଁ କିମ୍ବା ସମର୍ଥ ମଧ୍ୟ ନୁହଁ । ତେଣୁ ଚୀନ ବୁର୍ଜୁୟା ଗଣତାନ୍ତ୍ରିକ ବିପ୍ଳବର ଦୁଇଟି ମୂଳ ସମସ୍ୟା ବା କର୍ତ୍ତବ୍ୟ ବୁର୍ଜୁୟା ଶ୍ରେଣୀ ଦ୍ୱାରା କଦାପି ସାଧିତ ହେବ ନାହିଁ । ଅଧିକନ୍ତୁ ୧୯୨୭ ଠାରୁ ୧୯୩୭ର ଲମ୍ବ ଦୀର୍ଘ ସମୟ ଭିତରେ ବୁର୍ଜୁୟା ଲୋକେ ସାମ୍ରାଜ୍ୟବାଦୀମାନଙ୍କ ପାଖରେ ଆତ୍ମ-ସମର୍ପଣ କରିଛନ୍ତି, ସାମନ୍ତବାଦୀ ଶକ୍ତିମାନଙ୍କ ସଙ୍ଗେ ମେଣ୍ଟ ବାନ୍ଧିଛନ୍ତି; ସେମାନଙ୍କ ପୂର୍ବ କାର୍ଯ୍ୟକ୍ରମର ବିରୁଦ୍ଧାଚରଣ କରିଛନ୍ତି ଓ ବିପ୍ଳବୀ ଶକ୍ତିର ବିରୋଧ କରିଛନ୍ତି । ପୁଣି ଏଥର ଜାପାନ ବିରୋଧୀ

ଲଢ଼େଇ ବେଳେ ଊାଙ୍ଗଚ୍ୟାଙ୍ଗ୍ ଝିଙ୍କ ପ୍ରତିନିଧିତ୍ୱ କରୁଥିବା ବଡ଼ ବୁର୍ଜୁୟାର ଏକ ଅଂଶ ଶତ୍ରୁ ପାଖରେ ଆତ୍ମ ବିକ୍ରୟ କରିଛି । ଏହା ଫଳରେ ଉକ୍ତ ଶ୍ରେଣୀର ନୂଆ ବିଶ୍ୱାସଘାତକତାର ଏକ ଦୃଷ୍ଟାନ୍ତ ମିଳିଲା । ଇତିହାସରେ ଚୀନ ବୁର୍ଜୁୟା ଓ ଅଗ୍ରଗାମୀ ୟୁରୋପ ଓ ଆମେରିକା ଦେଶମାନଙ୍କର ବୁର୍ଜୁୟା ଭିତରେ ବିଶେଷତଃ ଫରାସୀ ବୁର୍ଜୁୟା ଭିତରେ ଏହାହିଁ ପାର୍ଥକ୍ୟ । ବୁର୍ଜୁୟା ବିପ୍ଳବ ବେଳେ ୟୁରୋପ ଓ ଆମେରିକା ଦେଶ ସମୂହ ବିଶେଷତଃ ଫ୍ରାନସ୍‌ର ବୁର୍ଜୁୟା ଶ୍ରେଣୀ ଅପେକ୍ଷାକୃତ ସମ୍ପୂର୍ଣ୍ଣଭାବେ କାର୍ଯ୍ୟ କରୁଥିଲା, ମାତ୍ର ଚୀନ ଦେଶର ବୁର୍ଜୁୟା ଶ୍ରେଣୀର ଏହି ବୈଶିଷ୍ଟ୍ୟର ଅଭାବ ରହିଛି ।

ଏକ ପକ୍ଷରେ ବୈପ୍ଳବିକ ପ୍ରକୃତି ଅପରପକ୍ଷରେ ଆପୋଷ କରିବା ପ୍ରକୃତି ଏହାହିଁ ଚୀନ ବୁର୍ଜୁୟାର ଯାଉଁଳି ପ୍ରକୃତି । ଇତିହାସକୁ ଦେଖିଲେ ୟୁରୋପ ଆମେରିକା ବୁର୍ଜୁୟା ଶ୍ରେଣୀର ଏହି ଯାଉଳି ପ୍ରକୃତି ମଧ୍ୟ ଦେଖାଯାଇଛି । ଶତ୍ରୁ ଯେତେବେଳେ ବୁର୍ଜୁୟା ଶ୍ରେଣୀକୁ ବିପଦଗ୍ରସ୍ତ କରୁଛି ସେତେବେଳେ ଶ୍ରମିକ ଓ କୃଷକଙ୍କ ସହିତ ମେଣ୍ଟ ବାନ୍ଧିବା ଓ ଶ୍ରମିକ କୃଷକ ଯେତେବେଳେ ଜାଗତିଆର ହେଉଛନ୍ତି ସେତେବେଳେ ସେମାନଙ୍କର ବିରୋଧ କରିବା, ଏହି ରୀତି ବିଭିନ୍ନ ଦେଶର ବୁର୍ଜୁୟାଙ୍କଠାରେ ଦେଖା ଯାଇଛି । କେବଳ ଚୀନ ବୁର୍ଜୁୟା ଏହି ବୈଶିଷ୍ଟ୍ୟକୁ ଖୁବ୍ ପରିଷ୍କାର ଭାବେ ଦେଖାଉଛି ।

ଏହା ଅତି ସ୍ପଷ୍ଟ ଯେ ଚୀନରେ ସାମ୍ରାଜ୍ୟବାଦକୁ ଗାଦିଚ୍ୟୁତ କରିବାକୁ ଯିଏ ଲୋକଙ୍କୁ ନେତୃତ୍ୱ ଦେଇପାରିବ, ଲୋକେ ତାକୁ ବିଶ୍ୱାସ କରିବେ । କାରଣ ସାମ୍ରାଜ୍ୟବାଦ, ଓ ସାମନ୍ତବାଦ ବିଶେଷତଃ ସାମ୍ରାଜ୍ୟବାଦ ଲୋକଙ୍କର ଭୀଷଣ ଶତ୍ରୁ । ଆଜି ଯିଏ ଜାପାନ

ସାମ୍ରାଜ୍ୟବାଦୀଙ୍କୁ ଦେଶରୁ ତଡ଼ି ଦେବାକୁ ଲୋକଙ୍କୁ ନେତୃତ୍ୱ ଦେଇ ପାରିବ ଏବଂ ଗଣତାନ୍ତ୍ରିକ ରାଜନୀତିକୁ କାର୍ଯ୍ୟକାରୀ କରିବ ସେ ଲୋକଙ୍କର ତ୍ରାଣ କର୍ତ୍ତା । ଚୀନ ବୁର୍ଜୁୟା ଯଦି ଏକଥା କରି ପାରେ ତେବେ ପ୍ରତ୍ୟେକ ତାକୁ ପ୍ରଶଂସା କରିବା ମାତ୍ର ଯଦି ସେ ଏହା କରି ପାରିବ ନାହିଁ ତେବେ ମୁଖ୍ୟତଃ ଦାୟିତ୍ୱ ନିଶ୍ଚିତ ଭାବେ ସର୍ବହରା ଶ୍ରେଣୀ ଉପରେ ପଡ଼ିବ ।

ତେଣୁ ଅବସ୍ଥା ଯେଉଁଭଳି ହେଉନା କାହିଁକି, ଦେଶର ଭାଗ୍ୟ ନିୟନ୍ତ୍ରଣ କରିବାକୁ ସର୍ବହରା, କୃଷକ, ବୁଦ୍ଧିଜୀବୀ ଓ ଅନ୍ୟାନ୍ୟ ନିମ୍ନ ମଧ୍ୟବର୍ତ୍ତୀ ଶ୍ରେଣୀ ହେଉଛନ୍ତି ଚୀନର ମୌଳିକ ଶକ୍ତି. ଏହି ସବୁ ଶ୍ରେଣୀ ଭିତରୁ କେତେକ ଜାଗ୍ରତ ହୋଇଛନ୍ତି । ଆଉ କେତେକ ଜାଗ୍ରତ ହେବା ଧାରାରେ ଗତି କରୁଛନ୍ତି । ଏହି ମାନେହିଁ ଚୀନ ଗଣତାନ୍ତ୍ରିକ ଜନତନ୍ତ୍ରରେ ଜାତି ଓ କ୍ଷମତା ଗଠନରେ ସବୁଠୁଁ ମୌଳିକ ଭାଗ ଅଧିକାର କରିବେ । ଆମେ ଯେଉଁ ଚୀନ ଗଣତାନ୍ତ୍ରିକ ଜନତନ୍ତ୍ର ବର୍ତ୍ତମାନ ଗଢିବାକୁ ଚାହୁଁ ତାହା କେବଳହିଁ ସାମ୍ରାଜ୍ୟବାଦ ଓ ସାମନ୍ତବାଦ ବିରୋଧୀ ଲୋକମାନଙ୍କର ବନ୍ଧୁତାରେ ଶାସିତ ହେବ । ଏହା ନୂତନ ଗଣତନ୍ତ୍ରର ଜନତନ୍ତ୍ର ହେବ ଅବା ପ୍ରକୃତ ପକ୍ଷେ ଡାକ୍ତର ସୁନୟାତସେନଙ୍କ ୩ଟି ବିପ୍ଳବୀ ନୀତି ସମ୍ବଳିତ ବିପ୍ଳବୀ ସାନ ମିନ ଚୁଆଇର ତନ୍ତ୍ର ହେବ ।

ନୂତନ ଗଣତାନ୍ତ୍ରିକ ଜନତନ୍ତ୍ର ଏକ ପକ୍ଷରେ ପୁଞ୍ଜିବାଦୀଙ୍କ ଦ୍ୱାରା ଶାସିତ ପାଶ୍ଚାତ୍ୟ ଜଗତରେ ପୁରୁଣା ପୁଞ୍ଜିବାଦୀ ଜନତନ୍ତ୍ର ଢଙ୍ଗର ନୁହେଁ । ସେ ଜନତନ୍ତ୍ରର ଆଉ ଉପଯୋଗିତା ନାହିଁ । ଅନ୍ୟ ପକ୍ଷରେ ସର୍ବହରା ଦ୍ୱାରା ଶାସିତ ସୋଭିଏଟ ଢ଼ଙ୍ଗର ସମାଜବାଦୀ ଜନତନ୍ତ୍ର ମଧ୍ୟ ଏହା ନୁହେଁ । ସେହିହେତୁ ଏକ ନିର୍ଦ୍ଦିଷ୍ଟ ଐତିହାସିକ

ସମସ୍ତ ଭିତରେ ଔପନିବେଶିକ ଓ ଅର୍ଦ୍ଧ ଔପନିବେଶିକ ଦେଶ-ମାନଙ୍କରେ ସୋଭିଏଟ ଢ଼ଙ୍ଗର ଜନତନ୍ତ୍ରକୁ ଉଚିତ ମତେ ଚଳାଇ ହେବନାହିଁ । ତେଣୁ ଏ ସବୁ ଦେଶରେ ଏକ ତୃତୀୟ ଢଙ୍ଗର ଜନତନ୍ତ୍ରହିଁ ହେବ ଜାତୀୟ ନୀତି । ତାହାର ନାମ ନୂତନ ଗଣତନ୍ତ୍ର । ଏକ ନିର୍ଦ୍ଦିଷ୍ଟ ଐତିହାସିକ ସମୟ ଲାଗି ଏହାହିଁ ଜାତୀୟ ସ୍ୱରୂପ—ଏହାର ପ୍ରକୃତି ମଧ୍ୟବର୍ତ୍ତୀକାଳୀନ । କିନ୍ତୁ ଏହି ଢଙ୍ଗରସ୍ୱରୂପକୁ ବାଦ ଦେଇ ହେବ ନାହିଁ କି ବଦଳେଇ ହେବ ନାହିଁ ।

ତେଣୁ ସେମାନଙ୍କର ସାମାଜିକ ପ୍ରକୃତି ଦୃଷ୍ଟିରୁ ପୃଥିବୀର ବିଭିନ୍ନ ସ୍ୱରୂପକୁ ମୂଳତଃ ତିନୋଟି ପର୍ଯ୍ୟାୟରେ ବିଭକ୍ତ କରିବାକୁ ହେବ । ପ୍ରଥମ ହେଉଚି ବୁର୍ଜୁୟା ଦ୍ୱାରା ଶାସିତ ଜନତନ୍ତ୍ର; ଦ୍ୱିତୀୟ ହେଉଚି ସର୍ବହରା ଦ୍ୱାରା ଶାସିତ; ତୃତୀୟ ହେଉଚି ଗୁଡିଏ ବିପ୍ଳବୀ ଶ୍ରେଣୀଙ୍କ ଦ୍ୱାରା ଯୁକ୍ତଭାବେ ଶାସିତ ଜନତନ୍ତ୍ର ।

ପୁରୁଣା ଗନ୍ତନ୍ତ୍ରିକ ଦେଶ ଗୁଡ଼ିକ ପ୍ରଥମ ପର୍ଯ୍ୟାୟରେ ପଡ଼ୁଛନ୍ତି । ଯେଉଁସବୁ ଦେଶ ଉଭୟ ପୁଞ୍ଜିବାଦୀ ଓ ଜମିଦାରଙ୍କ ଦ୍ୱାରା ମିଳିତ ଭାବେ ଶାସିତ ହେଉଛନ୍ତି ସେମାନେ ମଧ୍ୟ ଏହି ପର୍ଯ୍ୟାୟରେ ଅନ୍ତର୍ଭୁକ୍ତ ହେବେ ।

ଦ୍ୱିତୀୟ ପର୍ଯ୍ୟାୟର ଜନତନ୍ତ୍ର ସୋଭିଏଟ ୟୁନିଅନରେ ପ୍ରତିଷ୍ଠିତ ହୋଇଛି ଓ ବିଭିନ୍ନ ପୁଞ୍ଜିବାଦୀ ଦେଶରେ ପ୍ରତିଷ୍ଠିତ ହେବା ଦିଗରେ ଗତି କରୁଛି । ଏକ ନିର୍ଦ୍ଦିଷ୍ଟ ସମୟରେ ଏହାହିଁ ପୃଥିବୀ ଶାସନର ରୂପ ହେବ ।

ତୃତୀୟଟି ହେଉଚି ବିପ୍ଳବୀ ଉପନିବେଶ ଓ ଅର୍ଦ୍ଧ ଉପନିବେଶ ଦେଶ ଗୁଡ଼ିକର ମଧ୍ୟବର୍ତ୍ତୀ କାଳୀନ ସ୍ୱରୂପ । ଏ କଥା ସତ ଯେ

ପ୍ରତ୍ୟେକ ଉପନିବେଶ ଓ ଅର୍ଦ୍ଧ ଉପନିବେଶର କେତେକ ନିର୍ଦ୍ଦିଷ୍ଟ ବୈଶିଷ୍ଟ୍ୟ ରହିଛି । ମାତ୍ର ଏହି ପାର୍ଥକ୍ୟ ଖୁବ୍ ଗୌଣ । ଉପନିବେଶ ଦେଶ ଗୁଡ଼ିକ ଯେ ପର୍ଯ୍ୟନ୍ତ ବିପ୍ଳବୀ ବୈଶିଷ୍ଟ୍ୟରକ୍ଷିଚନ୍ତି, ସେ ଯାଏ ସେ ଗୁଡିକର ଜାତୀୟ ଓ ସରକାରୀ ଗଠନବ୍ୟବସ୍ଥା ମୌଳିକ ଭାବେ ସମାନ ରହିବନାହିଁ ରହିବ । ତାର ଅର୍ଥ ସେ ଗୁଡିକ ନୂତନ ଗଣତନ୍ତ୍ରର ଦେଶ ହେବେ ଏବଂ କେତେଗୁଡ଼ିଏ ସାମ୍ରାଜ୍ୟବାଦ ବିରୋଧୀ ଶକ୍ତିଙ୍କର ମିଳିତ ଶାସନରେ ରହିବେ । ବର୍ତ୍ତମାନ ଚୀନରେ ନୂତନ ଗଣତାନ୍ତ୍ରିକ ସରକାରର ଏହି ରୂପ ହେଉଛି ମିଳିତ ଜାପାନ ବିରୋଧୀ ସାମୁଖ୍ୟର ରୂପ । ଏହା ଜାପାନ ବିରୋଧୀ, ସାମ୍ରାଜ୍ୟବାଦ ବିରୋଧୀ ଏବଂ ଏଥିରେ କେତେଗୁଡ଼ିଏ ଶ୍ରେଣୀଙ୍କର ବନ୍ଧୁତା ପ୍ରତିଷ୍ଠିତ ହୋଇଛି ଓ ଏକ ମିଳିତ ସାମୁଖ୍ୟ ରହିଛି । କିନ୍ତୁ ଚୀନରେ ବହୁଦିନ ହେଲି ପ୍ରତିରୋଧ ଲଢ଼େଇ ଚାଲୁଥିଲେ ସୁଦ୍ଧା ଦେଶକୁ "ଗଣତାନ୍ତ୍ରିକ" କରିବାର ଯେଉଁ ମୌଳିକ କାର୍ଯ୍ୟ ତାହା ଏପର୍ଯ୍ୟନ୍ତ ଆରମ୍ଭ ହୋଇନାହିଁ । ଆମର ଏହି ମୌଳିକ ଦୁର୍ବଳତାର ସୁଯୋଗ ନେଇ ଜାପାନୀ ସାମ୍ରାଜ୍ୟବାଦୀମାନେ ଆମ ଦେଶର ବିଭିନ୍ନ ଅଞ୍ଚଳରେ ଭଲଭାବେ ପଶି ଆସିଛନ୍ତି । ଯଦି ଆମେ ଏହି ଅବସ୍ଥାକୁ ଗୁରୁତ୍ୱ ସହିତ ବିଚାର ନ କରୁ ତେବେ ଆମ ଜାତିର ଭାଗ୍ୟରେ ମହା ବିପର୍ଯ୍ୟୟ ଘଟିବ । ଆମର ଆଶା ଯେଉଁ ଶାସନତାନ୍ତ୍ରିକ ରାଜନୈତିକ ଆନ୍ଦୋଳନ ଆରମ୍ଭ ହୋଇଛି; ତାହା ଏ ବିପଦକୁ ଦୂର କରିବାକୁ ସମର୍ଥ ହେବ ।

ଏଠି ଆମର ଆଲୋଚ୍ୟବସ୍ତୁ ହେଉଛି ଜାତୀୟ ନୀତି । ଏହି ଜାତୀୟ ନୀତି ସବୁବେଳେ ବାଦାନୁବାଦର ପ୍ରଶ୍ନ ହୋଇ ଆସିଛି ଏବଂ ଚିଙ୍ଗ୍ ବଂଶର ରାଜତ୍ୱକାଳରୁ ଶତାବ୍ଦୀ ଶତାବ୍ଦୀ ଧରି ଏହାର

ସିଦ୍ଧାନ୍ତ ହୋଇ ପାରିନାହିଁ । ବାସ୍ତବ ପକ୍ଷରେ କେବଳ ଏହି ପ୍ରଶ୍ନ ହେଉଛି ଦେଶସ୍ଥ ବିଭିନ୍ନ ସାମାଜିକ ଶ୍ରେଣୀମାନଙ୍କ ସ୍ଥିତିର ପ୍ରଶ୍ନ । ଶ୍ରେଣୀ ସ୍ଥିତି ସଂବନ୍ଧରେ ଯାହା ସତ୍ୟ ତାକୁ ଲୁଚେଇବା ହେଉଛି ବୁର୍ଜୁୟା ଲୋକଙ୍କର ଅଭ୍ୟାସ । ଏକଶ୍ରେଣୀ—ଏକ ନାୟକତ୍ୱର ବାସ୍ତବତାକୁ ଘୋଡ଼େଇ ରଖିବାକୁ ସେମାନେ "ଜାତି" ଶବ୍ଦର ଦ୍ୱାହି ଦେଇଥାନ୍ତି । ବିପ୍ଳବୀ ଲୋକଙ୍କ ପକ୍ଷେ ଏକଥା ଲୁଚେଇବା ଲାଭ ଦାଏ ନାହିଁ; ତେଣୁ ଏକଥା ସ୍ପଷ୍ଟଭାବେ ପଦାରେ ପକାଇ ଦେବା ଉଚିତ । ଅବଶ୍ୟ "ଜାତି" ବୋଲି ଶବ୍ଦକୁ କେତେକ ସମୟରେ ବ୍ୟବହାର କରାଯାଇ ପାରେ । ମାତ୍ର ବିଶ୍ୱାସଘାତକ ଓ ବିପ୍ଳବ ବିରୋଧୀ ଲୋକ ଏଥିରେ ଅନ୍ତର୍ଭୁକ୍ତ ନୁହନ୍ତି । ଏହାର ଅର୍ଥ ହେଉଛି ବିଶ୍ୱାସଘାତକ ଓ ବିପ୍ଳବ ବିରୋଧୀଙ୍କ ଉପରେ ବିପ୍ଳବୀ ଜନସାଧାରଣ ଓ ବିପ୍ଳବୀ ଶ୍ରେଣୀମାନଙ୍କର ଏକନାୟକତ୍ୱ । ଏହାହିଁ ଆମର ଦେଶ ।

୧୯୨୪ର ପ୍ରଥମ କୋମିନତାଙ୍କ କଂଗ୍ରେସର ପ୍ରସିଦ୍ଧ ଘୋଷଣାରେ ଅଛି :—"ଆଜିକାଲିକା ବିଭିନ୍ନ ଆଧୁନିକ ଦେଶ ମାନଙ୍କର ତଥାକଥିତ ଗଣତାନ୍ତ୍ରିକ ବ୍ୟବସ୍ଥାକୁ ସାଧାରଣତଃ ବୁର୍ଜୁୟାମାନେ ଏକଚାଟିଆ ଅଧିକାରରେ ରଖିଥାନ୍ତି ଏବଂ ତାକୁହିଁ ସାଧାରଣ ଲୋକଙ୍କ ପରେ ଅତ୍ୟାଚାର କରିବାର ଯନ୍ତ୍ର ହିସାବରେ ଲଗାନ୍ତି । ମାତ୍ର କୋମିନ୍‌ତାଙ୍ଗର ଗଣତନ୍ତ୍ର ଭିତରେ ସାଧାରଣ ଜନତାଙ୍କର ଭାଗ ରହିଛି ଏବଂ ଏକ ସଂଖ୍ୟାଲଘୁ ଦଳଙ୍କର ତାହା ବ୍ୟକ୍ତିଗତ ଅଧିକାର ନୁହେଁ ।" ଷୋଳବର୍ଷ ହେଲା କୋମିନ୍‌ତାଙ୍ଗ ତାର ନିଜ ଘୋଷଣା ବିରୁଦ୍ଧରେ କାମ କରିଛି ଏବଂ ଏକ ଗମ୍ଭୀର ଜାତୀୟ ବିପର୍ଯ୍ୟୟର ଅବସ୍ଥା ସୃଷ୍ଟି କରିଛି । ଏହା କୋମିନ୍‌ତାଙ୍ଗର

ଏକ ମସ୍ତବଡ଼ ଭୁଲ୍ । ଆମେ ଆଶାକରୁ ଜାପାନ ବିରୋଧୀ ପ୍ରତିରୋଧ ମୂଳକ ଯୁଦ୍ଧ ଯଜ୍ଞରେ ଏହି ଭୁଲ୍‌ର ସଂଶୋଧନ ହେବ ।

ସରକାରୀ ନୀତି କଥା ଉଠୁଛି । ସରକାରୀ ନୀତି କହିଲେ ବୁଝାଏ ଯେ କି ରକମ ସରକାରର ରୂପ ହେବ । ଅର୍ଥାତ୍ ଶତ୍ରୁକୁ ରୋକିବା ଲାଗି ଓ ନିଜର ଆତ୍ମରକ୍ଷା ଲାଗି କେତେକ ସାମାଜିକ ଶ୍ରେଣୀ କେଉଁ ରୂପ ଗ୍ରହଣ କରନ୍ତି, ଏକ ଉପଯୁକ୍ତ ସରକାରୀ ରୂପ ଗ୍ରହଣ ବିନା ଦେଶକୁ ବୃଦ୍ଧି ହେବନାହିଁ । ଚୀନରେ ଆମେ ବିଭିନ୍ନ ସ୍ତରର ଜନସାଧାରଣଙ୍କ କଂଗ୍ରେସ ବା ସମ୍ମେଳନର ପ୍ରଥା ଗ୍ରହଣ କରିବାକୁ ହେବ । ଗ୍ରାମ ସମ୍ମେଳନଠାରୁ ଜାତୀୟ ସମ୍ମେଳନ ପର୍ଯ୍ୟନ୍ତ ତାହାର ସ୍ତର ରହିବ । ସେହିମାନଙ୍କ ଜରିଆରେ ବିଭିନ୍ନ ସ୍ତରର ସରକାରୀ ରୂପ ଗଠିତ ହେବ । ମାତ୍ର ଏକ ଖାଣ୍ଟି ସାର୍ବଜନୀନ ନିର୍ବାଚନ ଅବଶ୍ୟକ । ଉକ୍ତ ନିର୍ବାଚନରେ ଜାତି, ଧର୍ମ, ସମ୍ପତ୍ତି, ଶିକ୍ଷା ଓ ସ୍ତ୍ରୀ ପୁରୁଷ ପ୍ରଭେଦ ରହିବ ନାହିଁ । ଏହାକୁ ପ୍ରୟୋଗ କରାଯିବ । ତାହା ହେଲେ ଦେଶର ବିଭିନ୍ନ ଶ୍ରେଣୀ ସେମାନଙ୍କର ଉପଯୁକ୍ତ ସ୍ଥାନ ପାଇ ପାରିବେ ଓ ଜନସାଧାରଣଙ୍କ ମତାମତ ଉପଯୁକ୍ତ ଭାବେ ପ୍ରକାଶ ହୋଇ ପାରିବ । ତାହା ହେଲେ ବିପ୍ଳବୀ ସଂଗ୍ରାମ ଓ ନୂତନ ଗଣତନ୍ତ୍ରର ଆକାଙ୍କ୍ଷାକୁ ନିର୍ଦ୍ଦେଶ ଦେଇ ହେବ । ଏହି ବ୍ୟବସ୍ଥାହିଁ ଗଣତାନ୍ତ୍ରିକ କେନ୍ଦ୍ରୀକରଣର ବ୍ୟବସ୍ଥା । ଏହି ବ୍ୟବସ୍ଥା ଉପରେ ପ୍ରତିଷ୍ଠିତ ଏକ ସରକାର ହେଲେ ଆମେ ପୂର୍ଣ୍ଣ ଭାବରେ ସମସ୍ତ ବିପ୍ଳବୀ ଜନସାଧାରଣଙ୍କର ଚିନ୍ତା ଓ ଚେତନାକୁ ବିକାଶ କରାଇ ପାରିବୁ ଏବଂ ବିପ୍ଳବର ଶତ୍ରୁକୁ ଆମର ଜୋରଦାର ଶକ୍ତିରେ ପ୍ରତିରୋଧ କରି ପାରିବୁ । "ସଂଖ୍ୟାଲଘୁ ସବୁ କଥା ଏକଗୁଡ଼ିଆ କରି ବସିବେ ନାହିଁ" ଏହି କଥା ଆମେ ସୈନ୍ୟବାହିନୀ ତଥା ସରକାରରେ ମଧ୍ୟ ଦେଖେଇ

ବାକୁ ପଡ଼ିବ । ମାତ୍ର ଏକ ଖାଣ୍ଟି ଗଣତାନ୍ତ୍ରିକ ବ୍ୟବସ୍ଥା ନ ହେଲେ ଏହି ଲକ୍ଷ୍ୟ କଦାପି ହାସଲ ହୋଇ ପାରିବ ନାହିଁ । ଏହାର ଅଭାବ ଅର୍ଥ ଜାତୀୟ ରାଜନୀତିର ରୂପ ଓ ସରକାରୀ ରାଜନୀତିର ରୂପ ଭିତରେ ଅସାମଞ୍ଜସ୍ୟ । ତେଣୁ କେତେକ ବିପ୍ଳବୀ ଶ୍ରେଣୀଙ୍କର ମିଳିତ ଶାସନ ହେଉଛି ଜାତୀୟ ରାଜନୀତିର ରୂପ ଏବଂ ଗଣତାନ୍ତ୍ରିକ କେନ୍ଦ୍ରୀକରଣ ହେଉଛି ସରକାରୀ ରାଜନୀତିର ରୂପ । ଏହି ଦୁଇଙ୍କର ସମିଶ୍ରଣହିଁ ନୂତନଗଣ ତନ୍ତ୍ରର ରାଜନୀତି । ଏହାହିଁ ନୂତନ ଗଣତାନ୍ତ୍ରିକ ପ୍ରଜାତନ୍ତ୍ରର ରାଜନୀତି ଓ ମିଳିତ ଜାପାନୀ ବିରୋଧୀ ସାମ୍ମୁଖ୍ୟ ପ୍ରଜାତନ୍ତ୍ରର ରାଜନୀତି । ଏହାହିଁ ଡାକ୍ତର ସୁନୟାତ୍ ସେନଙ୍କ ବିପ୍ଳବୀ ନୀତି ସଂବଳିତ ଅର୍ଥାତ୍ ନୂଆ ସାନ୍, ମିନ ଚୂଆଇ ପ୍ରଜାତନ୍ତ୍ରର ରାଜନୀତି । ଏହାହିଁ ପ୍ରକୃତପକ୍ଷେ ବାସ୍ତବ ଚୀନ ପ୍ରଜାତନ୍ତ୍ରର ରାଜନୀତି । ବର୍ତ୍ତମାନ ଆମ ଦେଶ ନାମକୁ ମାତ୍ର ଏକ ପ୍ରଜାତନ୍ତ୍ର, ସେଥିରେ ବାସ୍ତବତା ନାହିଁ । ଆଜି ତେଣୁ ଆମ କର୍ତ୍ତବ୍ୟ ହେଉଛି ପ୍ରଜାତନ୍ତ୍ର ନାମର ତାତ୍ପର୍ଯ୍ୟତାକୁହିଁ ହାସଲ କରିବା । ବିପ୍ଳବୀ ଓ ଜାପାନ ବିରୋଧୀ ଚୀନ ଏହି ପ୍ରକାର ଆଭ୍ୟନ୍ତରୀଣ ରାଜନୈତିକ ସମ୍ପର୍କ ପ୍ରତିଷ୍ଠା କରିବା ଉଚିତ ଓ ଅବଶ୍ୟ ପ୍ରତିଷ୍ଠା କରିବ । ବର୍ତ୍ତମାନ ସମୟରେ ଜାତୀୟ ପୁନର୍ଗଠନ କାମରେ ଆମର ଏହାହିଁ କେବଳ ମାତ୍ର ସଠିକ ମାର୍ଗ ।

---

# ନୂତନ ଗଣତନ୍ତ୍ରର ଅର୍ଥନୀତି

ଚୀନରେ ଯେଉଁ ଲୋକତନ୍ତ୍ର ପ୍ରତିଷ୍ଠିତ ହେବ ତାହାର ରାଜନୀତି ହେଉଚି ନୂତନ ଗଣତନ୍ତ୍ରର ରାଜନୀତି ଏବଂ ତାର ଅର୍ଥନୀତି ମଧ୍ୟ ନୂତନ ଗଣତନ୍ତ୍ରର ଅର୍ଥନୀତି ।

ବଡ଼ ବଡ଼ ବ୍ୟାଙ୍କ, ବଡ଼ ବଡ଼ ଶିଳ୍ପ, ବଡ଼ ବଡ଼ ବ୍ୟବସାୟ ଲୋକତନ୍ତ୍ରର ମାରଫତ ରହିବ । "ବିଦେଶୀ ହେଉ ବା ସ୍ୱଦେଶୀ ହେଉ ଯେଉଁସବୁ ଶିଳ୍ପୋଦ୍ୟମର ଏକଚାଟିଆ ଚରିତ୍ର ଥିବ କିମ୍ବା ତାର ବିରାଟ ଆକୃତି ଯୋଗୁଁ କୌଣସି ବ୍ୟକ୍ତିବିଶେଷ ପକ୍ଷେ ପ୍ରତିଷ୍ଠା କରିବା ସମ୍ଭବପର ନୁହେଁ ସେଗୁଡ଼ିକ ରାଷ୍ଟ୍ରଦ୍ୱାରା ପରିଚାଳିତ ଓ ନିୟନ୍ତ୍ରିତ ହେବ । ତାହେଲେ ବ୍ୟକ୍ତିଗତ ପୁଞ୍ଜି ଜନସାଧାରଣଙ୍କ ଜୀବନକୁ କବଳରେ ରଖି ପାରିବ ନାହିଁ । ପୁଞ୍ଜି ନିୟନ୍ତ୍ରଣର ଏହାହିଁ ମୌଳିକ ନୀତି ।" ପ୍ରଥମ କୋମିନ୍‌ତାଙ୍ଗ କଂଗ୍ରେସର ମହାମାନ୍ୟ ଘୋଷଣାର ଏହା ଏକ ଅଂଶ । ତାହାହିଁ ନୂତନ ଗଣତାନ୍ତ୍ରିକ ଲୋକତନ୍ତ୍ରର ଅର୍ଥନୈତିକ ସଂଗଠନର ସଠିକ ମାର୍ଗ । ନୂତନ ଗଣତାନ୍ତ୍ରିକ ସରକାର ଅନ୍ୟାନ୍ୟ ପୁଞ୍ଜିବାଦୀ ବ୍ୟକ୍ତିଗତ ସଂପତ୍ତିକୁ ବାଜ୍ୟାପ୍ତ କରିବ ନାହିଁ । କିମ୍ବା "ଯାହା ଜନସାଧାରଣଙ୍କ ଜୀବନକୁ କବଳିତ କରିପାରିବନାହିଁ" ସେହିପରିକା ପୁଞ୍ଜିବାଦୀ ଉତପାଦନର ବିକାଶକୁ ବାଧା ଦେବନାହିଁ । କାରଣ ଚୀନର ଅର୍ଥନୀତି ବର୍ତ୍ତମାନ ସୁଦ୍ଧା ଖୁବ୍ ଅନୁନ୍ନତ ଅବସ୍ଥାରେ ରହିଛି । ଡ଼ାକ୍ତର ସୁନୟାତ ସେନଙ୍କର "ଯିଏ ଜମିଚଷେ ଜମି ତାର ହେବ" ସ୍ଲୋଗାନକୁ କାର୍ଯ୍ୟକାରୀ କରିବାକୁ ଏବଂ ଗ୍ରାମାଞ୍ଚଳରେ ସାମନ୍ତବାଦୀ ସଂପର୍କକୁ ଲୋପକରିବାକୁ ଯେଉଁ ଚାଷୀର ଜମି ନାହିଁ ବା ଅଳ୍ପ ଜମି ଅଛି,

ସେମାନଙ୍କ ଭିତରେ ଜମିଦାରମାନଙ୍କ ଜମି ବାଜ୍ୟାପ୍ତ କରି ବଣ୍ଟା ଯିବାର କେତେକ ବ୍ୟବସ୍ଥା ଏହା ଗ୍ରହଣ କରିବ ।

ଏକ ସମାଜବାଦୀ କୃଷି ବ୍ୟବସ୍ଥାର ପ୍ରତିଷ୍ଠା ଠାରୁ ଏହା ଭିନ୍ନ । ଏହା ଫଳରେହିଁ କେବଳ ଜମିରେ କୃଷକମାନଙ୍କର ବ୍ୟକ୍ତିଗତ ଅଧିକାର ସାବ୍ୟସ୍ତ ହେବ । ଧନୀଚାଷୀଙ୍କ କୃଷିଅର୍ଥନୀତି ପୂର୍ବବତ୍ ଚାଲିବାକୁ ଅନୁମତି ଦିଆଯିବ । "ଭୂସ୍ୱତ୍ୱ ସମୀକରଣ"ର ଏହାହିଁ ମାର୍ଗ ଏବଂ ଏଥିଲାଗି ସଠିକ ସ୍ଲୋଗାନ ହେଉଛି "ଜମି ଯିଏ ଚାଷକରେ ସିଏ ଜମି ପାଇବ"

"ପୁଞ୍ଜି ନିୟନ୍ତ୍ରଣ" "ଭୂସ୍ୱତ୍ୱ ସମୀକରଣ" ଏବଂ "ସଂଖ୍ୟା ଲଘୁ ଲୋକଙ୍କ ଏକଚାଟିଆ ଅଧିକାର" ଲୋପ ଏହାହିଁ ଚୀନ ଅର୍ଥନୀତିର ଗତି ପଥ । କେତେକ ପୁଞ୍ଜିପତି ଓ ଜମିଦାରଙ୍କୁ "ଜନସାଧାରଣଙ୍କ ଜୀବନକୁ କବଳିତ କରିବାକୁ" ଅନୁମତି ଦିଆଯାଇ ନପାରେ । କିମ୍ବା ୟୁରୋପ ବା ଆମେରିକା ଢଙ୍ଗର ପୁଞ୍ଜିବାଦୀ ସମାଜ ଗଢ଼ିବାକୁ ଆମେ ଅନୁମତି ଦେବୁନାହିଁ । ଏହି ମାର୍ଗ ବିରୁଦ୍ଧରେ ଯିଏ ଯିବ ସେ କେବେ ସଫଳ ହେବ ନାହିଁ ଏବଂ ଗଲେ ସେ ନିଶ୍ଚିହ୍ନ ହୋଇଯିବ ।

ବିପ୍ଳବୀ-ଚୀନ ଓ ଜାପାନ-ବିରୋଧୀ-ଚୀନର ଅଭ୍ୟନ୍ତରୀଣ ଅର୍ଥନୀତି ଏହାହିଁ ହେବ ଏବଂ ଏହାକୁହିଁ ନିଶ୍ଚିତଭାବେ ପ୍ରତିଷ୍ଠା କରିବାକୁ ହେବ ।

ନୂତନ ଗଣତନ୍ତ୍ରର ଏହାହିଁ ଅର୍ଥନୀତି ।

ନୂତନ ଗଣତନ୍ତ୍ରର ରାଜନୀତି ହେଉଛି ନୂତନ ଗଣତନ୍ତ୍ରର ଅର୍ଥନୀତିର ନିର୍ଯ୍ୟାସ ।

## ବୁର୍ଜ୍ୱା ଏକନାୟକତ୍ୱର ତତ୍ତ୍ୱଖଣ୍ଡନ

ନୂତନ ଗଣତାନ୍ତ୍ରିକ ଏହି ରାଜନୀତି ଓ ଅର୍ଥନୀତିର ଲୋକତନ୍ତ୍ର ଶତକଡ଼ା ୯୦ ଭାଗ ଚୀନ୍ ଲୋକଙ୍କ ସମର୍ଥନ ପାଇବ । ଡାକ୍ତର ସୁନୟାତ ସେନଙ୍କ ଭାଷାରେ "ଏହା ପ୍ରାକୃତିକ ନିୟମର ଅନୁବର୍ତ୍ତୀ, ମଣିଷର ବାସ୍ତବ ବୁଦ୍ଧି ସମ୍ମତ, ଏହାହିଁ ଦୁନିଆର ଗତି-ସ୍ରୋତ ଏବଂ ଜନସାଧାରଣଙ୍କ ଆବଶ୍ୟକତା ଓ ପରବର୍ତ୍ତୀ ବଂଶଧରମାନଙ୍କର ନିର୍ଦ୍ଦିଷ୍ଟ କର୍ତ୍ତବ୍ୟ । ତେଣୁ ଏହାର ଜୟ ସୁନିଶ୍ଚିତ ।" ଏହା ଏକମାତ୍ର ପନ୍ଥା ହୋଇଥିବାରୁ ଆଉ ଆମ ଲାଗି ଦ୍ୱିତୀୟ ପନ୍ଥା କିଛିନାହିଁ ।

ବୁର୍ଜୁୟା ଦ୍ୱାରା ଶାସିତ ଆମେ କଣ ପୁଞ୍ଜିବାଦୀ ରାଷ୍ଟ୍ରର ମାର୍ଗରେ ଯାଇପାରିବା ? ୟୁରୋପ ଓ ଆମେରିକା ପୁଞ୍ଜିବାଦୀମାନଙ୍କ ଏହାଯେ ପୁରୁଣାବାଟ ଏଥିରେ କୌଣସି ସନ୍ଦେହ ନାହିଁ । ମାତ୍ର ଚୀନର ଅଭ୍ୟନ୍ତରୀଣ ଅବସ୍ଥା ଓ ଆନ୍ତର୍ଜାତିକ ପାରିପାର୍ଶ୍ୱିକ ଅବସ୍ଥା ଏ କଥା କହିବାକୁ ଦେବନାହିଁ ।

ଆନ୍ତର୍ଜାତିକ ପରିବେଶ ଦୃଷ୍ଟିରୁ ଏପରି ମାର୍ଗ ଏକ ମୃତମାର୍ଗ । ପ୍ରଥମତଃ ଆନ୍ତର୍ଜାତିକ ପୁଞ୍ଜିବାଦ ଓ ସାମ୍ରାଜ୍ୟବାଦ ଏକଥା କରେଇ ଦେବ ନାହିଁ । ସାମ୍ରାଜ୍ୟବାଦୀ ଆକ୍ରମଣ, ଚୀନ-ସ୍ୱାଧୀନତାର ଏବଂ ତାର ପୁଂଜିବାଦ ବିକାଶର ବିରୋଧହିଁ ଆଜିକାଲିକା ଚୀନର ଇତିହାସ । ଗୋଟିକ ପରେ ଗୋଟିଏ ଚୀନ ବିପ୍ଳବର ପରାଜୟ ଘଟିଛି । କାରଣ ସାମ୍ରାଜ୍ୟବାଦ ସେଗୁଡ଼ିକର ଗଣ୍ଠି ଚିପି ଦେଇଛି ଏବଂ ସହସ୍ର ସହସ୍ର ଶହୀଦ ପ୍ରାଣବଳି ଦେଇସୁଛି।

କର୍ତ୍ତବ୍ୟ ଅପୂରଣ ହୋଇ ରହିଛି । ଆଜି ଆମେ ବିରାଟ ଓ ଶକ୍ତିଶାଳୀ ଜାପାନୀ-ସାମ୍ରାଜ୍ୟବାଦୀମାନଙ୍କର ସମ୍ମୁଖୀନ ହୋଇଛୁ । ସେମାନେ ଚୀନ ଭିତରେ ପଶେଇ ପଣି ଆମ ଦେଶକୁ ଏକ ଜାପାନୀ-ଉପନିବେଶରେ ପରିଣତ କରିବାକୁ ଇଚ୍ଛା କରୁଛନ୍ତି । ଜାପାନୀମାନେ ବାସ୍ତବପକ୍ଷେ ଚୀନରେ ତାଙ୍କର ପୁଞ୍ଜିବାଦ ପ୍ରତିଷ୍ଠା କରୁଛନ୍ତି, ମାତ୍ର ଚୀନ ତା ନିଜର ପୁଞ୍ଜିବାଦ ବିକାଶ କରିଉ, ଏକଥା କରେଇ ଦେଉ ନାହାନ୍ତି । ସେମାନେ ଚୀନରେ ତାଙ୍କ ନିଜର ଏକନାୟକତ୍ୱ ପ୍ରତିଷ୍ଠା କରୁଛନ୍ତି ମାତ୍ର ଚୀନ ବୁର୍ଜୁୟାଙ୍କୁ ଶାସନ କରିବାକୁ ଦେଉ ନାହାନ୍ତି । ଏକଥା ନିଶ୍ଚିତ ଯେ ସାମ୍ରାଜ୍ୟ-ବାଦର ଏହା ଶେଷ ସଂଗ୍ରାମ ଓ ଏହା ଅତି ଚଞ୍ଚଳ ଶେଷ ହୋଇଯିବ । "ସାମ୍ରାଜ୍ୟବାଦ ହେଉଛି ମୁମୂର୍ଷୁ ପୁଞ୍ଜିବାଦ ।" ଠିକ୍ ସେହି ହେତୁ ସାମ୍ରାଜ୍ୟବାଦକୁ ଅଧିକରୁ ଅଧିକ ଉପନିବେଶ ଓ ଅର୍ଦ୍ଧ ଉପନିବେଶ ଉପରେ ନିର୍ଭର କରିବାକୁ ପଡୁଛି ତେଣୁ ସେ ଅର୍ଦ୍ଧ ଉପନିବେଶ ଓ ଉପନିବେଶ ଗୁଡିକ ତାର ନିଜ ବୁର୍ଜୁୟା-ଶ୍ରେଣୀ ଦ୍ୱାରା ଶାସିତ ହେବାକୁ ଦେବନାହିଁ । ଜାପାନୀ ସାମ୍ରାଜ୍ୟ-ବାଦ ଗୁରୁତର ଅର୍ଥନୈତିକ ଓ ରାଜନୈତିକ ସଂକଟର ଘେରରେ ପଡ଼ିଛି ଏବଂ ମୁମୂର୍ଷୁ ଅବସ୍ଥାରେ ରହିଛି । ତେଣୁ ସେ ଚୀନ ବିରୁଦ୍ଧରେ ଲଢ଼େଇ କରି ତାକୁ ଏକ ଉପନିବେଶ କରିବାକୁ ଚାହିଁବ ଏବଂ ଚୀନରେ ଏକ ବୁର୍ଜୁୟାଶ୍ରେଣୀର ଏକନାୟକତ୍ୱ ପ୍ରତିଷ୍ଠା ହେବାକୁ ଦେବନାହିଁ କିମ୍ବା ଚୀନପୁଞ୍ଜିବାଦର ବିକାଶ କରେଇ ଦେବନାହିଁ ।

ଦ୍ୱିତୀୟତଃ ସମାଜବାଦ ଏପରି ମାର୍ଗକୁ ଅନୁମତି ଦେବ ନାହିଁ । ଆମେ ଆମ ସ୍ୱାଧୀନତା ଲାଗି ଯୁଦ୍ଧକରୁଥିଲେ, ସମାଜବାଦୀ

ରାଷ୍ଟ୍ର କିମ୍ବା ଆନ୍ତର୍ଜାତିକ ସର୍ବହରାର ସାହାଯ୍ୟରୁ ଆମେ ଅଲଗା ହୋଇ ପାରିବୁ ନାହିଁ । ତା ଅର୍ଥ ସୋଭିଏଟ ୟୁନିଅନର ସାହାଯ୍ୟରୁ ଆମେ ଅଲଗା ରହିବୁନାହିଁ । କିମ୍ବା ଜାପାନ, ବ୍ରିଟେନ, ଆମେରିକା ଫ୍ରାନସ୍ ଓ ଜର୍ମାନୀ ଦେଶର ସର୍ବହରା ଶ୍ରେଣୀ ଯେଉଁ ପୁଞ୍ଜିବାଦ ବିରୋଧୀ ସଂଗ୍ରାମ କରୁଛନ୍ତି ତାର ବିଜୟ ଜନିତ ସାହାଯ୍ୟରୁ ଆମେ ବଂଚିତ ରହିବୁ ନାହିଁ । ଅବଶ୍ୟ ଆମେ କହିପାରିବା ନାହିଁ ଯେ ଚୀନରେ ବିଜୟ ହେବା ପୂର୍ବରୁ ଏହି ସବୁ ଦେଶରେ, ଅନ୍ତତଃ ପକ୍ଷେ ଏଥିରୁ ଗୋଟିଏ ଦୁଇଟି ଦେଶରେ ବିପ୍ଳବ ଜୟଯୁକ୍ତ ହୋଇଥିବା ଆବଶ୍ୟକ । ମାତ୍ର ଏକଥା ନିଶ୍ଚିତ ଯେ ଆମେ ସେମାନଙ୍କର ସାହାଯ୍ୟ ବଳରେହିଁ ବିଜୟ ହାସଲ କରିପାରିବୁ । ସୋଭିଏଟ୍ ୟୁନିଅନର ସାହାଯ୍ୟ ସଂପର୍କରେ ଏହା ବିଶେଷଭାବେ ସତ୍ୟ । କାରଣ ଚୀନ ପ୍ରତିରୋଧ ସଂଗ୍ରାମରେ ଅନ୍ତିମ ବିଜୟ ଲାଗି ସୋଭିଏଟ ୟୁନିଅନର ସାହାଯ୍ୟ କଦାପି ବାଦ୍ ଦେଇ ହେବ ନାହିଁ । ସୋଭିଏଟ୍‌ର ସାହାଯ୍ୟ ପ୍ରତ୍ୟାଖ୍ୟାନ କରିବା ଅର୍ଥ ବିପ୍ଳବର ପରାଜୟକୁ ସୁନିଶ୍ଚିତ ଡ଼ାକିଆଣିବା । ଚୀନର ୧୯୨୭ ସୋଭିଏଟ-ବିରୋଧୀ ଆନ୍ଦୋଳନ କଣ ଏହି ଶିକ୍ଷା ଦେଇ ନାହିଁ ? ଯେତେ-ବେଳେ ଯୁଦ୍ଧ ଓ ବିପ୍ଳବ ଭିତରେ ପୃଥିବୀ ଗତି କରୁଛି । ଯେତେ-ବେଳେ ସମାଜବାଦ ଉନ୍ନତି କରିବା ଅବଶ୍ୟମ୍ଭାବୀ ସେତେବେଳ ସମୟରେ ସାମ୍ରାଜ୍ୟବାଦ ବିରୋଧୀ ଓ ସାମନ୍ତବାଦ ବିରୋଧୀ ସଂଗ୍ରାମ ଜୟଯୁକ୍ତ ହେଲାପରେ ଚୀନ ବୁର୍ଜୁୟା ଦ୍ୱାରା ଶାସିତ ବୁର୍ଜୁୟା ସମାଜ ପ୍ରତିଷ୍ଠା କରିବ ଏକଥା ଭାବିବା ସ୍ୱପ୍ନ ନୁହେଁ କି ?

ପ୍ରଥମ ମହାସମର ଓ ରୁଷ ଅକ୍ଟୋବର ବିପ୍ଳବପରେ କେତେକ ସ୍ୱତନ୍ତ୍ର କାରଣରୁ (ତୁର୍କୀ ଭଳି ଦେଶ ଯେଉଁଠି ବୁର୍ଜୁୟା

ଶ୍ରେଣୀ ଆକ୍ରମଣକାରୀ ଗ୍ରୀକ୍‌ମାନଙ୍କୁ ହଟେଇଲେ, ଏବଂ ସେଠାରେ ସର୍ବହରାଶ୍ରେଣୀ ଶକ୍ତିଶାଳୀ ନଥିଲେ) ଏକ କ୍ଷୁଦ୍ର କେମାଲପନ୍ଥୀ ବୁର୍ଜୁଆ ଶ୍ରେଣୀ ଶାସିତ ତୁର୍କୀର ଜନ୍ମ ହେଲା । ଦ୍ୱିତୀୟ ମହାସମର ପରେ ଓ ସୋଭିଏଟ୍ ୟୁନିଅନ ତାର ବିରାଟ ସମାଜବାଦ ନିର୍ମାଣ କଲାପରେ ବିଶେଷତଃ ୪୫ କୋଟି ଲୋକ ବାସ କରୁଥିବା ଏଭଳିକା "ତୁର୍କୀ" (ତା ଅର୍ଥ ଚୀନ ଦେଶ, ଅନୁବାଦକ) ଦେଶରେ ଠିକ୍ ସେହିପରିକା ବୁର୍ଜୁଆ ଶାସିତ ଦେଶ ପ୍ରତିଷ୍ଠା ହୋଇ ନ ପାରେ । ଚୀନର ବିଶେଷ ଅବସ୍ଥା ହେତୁ (ବୁର୍ଜୁଆଶ୍ରେଣୀର ଆପୋଷ କରିବା ପ୍ରକୃତି ଓ ସର୍ବହରାର ଶେଷ ପର୍ଯ୍ୟନ୍ତ ଲଢିବାର ପ୍ରକୃତି) ତୁର୍କୀରେ ଯେପରି ସହଜ ହେଲା ଏଠି ସେପରି ବିଜୟ କେବେହେଁ ଘଟିନାହିଁ । ୧୯୨୭ ବିରାଟ ବିପ୍ଳବର ପରାଜୟ ପରେ ଚୀନ ବୁର୍ଜୁଆ କଣ "କେମାଲବାଦ"ର ପ୍ରଶଂସା ଗାନ କରିନାହିଁ ? କିନ୍ତୁ ବର୍ତ୍ତମାନ ଚୀନର କେମାଲ କାହିଁ ? ଚୀନ ବୁର୍ଜୁଆ ଶାସିତ ପୁଞ୍ଜିବାଦୀସମାଜ ବା କାହିଁ ? ଏହି ବିଂଶ ଶତାବ୍ଦୀର ୪ର୍ଥ ଓ ୫ମ ଦଶନ୍ଧିରେ ଆନ୍ତର୍ଜାତିକ ପରିବେଶ ଯାହା, ସେତେବେଳେ ଉପନିବେଶ ଓ ଅର୍ଦ୍ଧ ଉପନିବେଶର "ବୀରମାନେ" ହୁଏତ ସମ୍ରାଜ୍ୟବାଦୀ ସାମୁଖ୍ୟରେ ରହି ପୃଥିବୀର ବିପ୍ଳବବିରୋଧୀ ଭୂମିକା ନେବେ ଅଥବା ସାମ୍ରାଜ୍ୟବାଦ ବିରୋଧୀ ସାମ୍ମୁଖ୍ୟରେ ରହିବେ ଓ ବିପ୍ଳବରେ ଭାଗ ନେବେ । ଏ ଦୁଇଟି ଭିତରୁ ଗୋଟିଏହିଁ ତାଙ୍କୁ ବାଛିନେବାକୁ ହେବ । ତୃତୀୟପନ୍ଥା ନାହିଁ ।

ଆଭ୍ୟନ୍ତରୀଣ ପରିବେଶରୁ ଚୀନ ବୁର୍ଜୁଆଶ୍ରେଣୀ କିଛି ଆବଶ୍ୟକ ଶିକ୍ଷା ଗ୍ରହଣ କରିବା ଉଚିତ । ସର୍ବହରାଶ୍ରେଣୀ, କୃଷୀ ଓ ପେଟିବୁର୍ଜୁଆ ଶ୍ରେଣୀର ଶକ୍ତିକୁ ଡରି ଚୀନ ବୁର୍ଜୁଆଶ୍ରେଣୀ

ବିପ୍ଳବର ବିଜୟ ମୁହୂର୍ତ୍ତରେ ସେମାନଙ୍କୁ ଗୋଇଠା ମାରି ପୋଫାଡ଼ି ଦେଇ ବିପ୍ଳବର ସୁଫଳକୁ ନିଜେ ଏକାକୀ ଭୋଗ କରିଛି । ତାହାପରେ ନିଜର ସମସ୍ତଶକ୍ତି ଖଟେଇ ସେ ଦଶବର୍ଷକାଳ କମ୍ୟୁନିଷ୍ଟ ବିରୋଧୀ ଯୁଦ୍ଧ ଚଳେଇଲା । ଅନ୍ତ ସେ କି ଫଳ ପାଇଲା ? ଏବେ ଯେତେବେଳେ ଏକ ଶକ୍ତି ସମ୍ପନ୍ନ ଶତ୍ରୁ ଆମ ଦେଶର ବହୁଦୂରକୁ ପଶିଗଲାଣି ଓ ଆମେ ଦୁଇବର୍ଷ ହେଲା ତାର ପ୍ରତିରୋଧ କରି ଆସିଲୁଣି ସେତେବେଳେ ପାଶ୍ଚାତ୍ୟ ବୁର୍ଜୁୟାଶ୍ରେଣୀର ଅଚଳ କାର୍ଯ୍ୟକ୍ରମକୁ ଅନୁକରଣ କରିବା କଣ ଆମର ଉଚିତ ? ଗତ ଦଶବର୍ଷର କମ୍ୟୁନିଷ୍ଟ ବିରୋଧୀ ଗୃହ ଯୁଦ୍ଧ ଯାହା ଆଣିପାରିଲା ନାହିଁ, ସେହି ବୁର୍ଜୁୟା-ଶାସିତ ସମାଜର ସ୍ୱପ୍ନ କ'ଣ ଦେଖୁଥିବା ?

ଏକଥା ସତ ଯେ ଗତ ୧୦ ବର୍ଷର କମ୍ୟୁନିଷ୍ଟ ବିରୋଧୀ ଅଭିଯାନରୁ ଏକ-ଦଳ ଏକାନାୟକତ୍ୱ ଜନ୍ମଲାଭ କରିଛି, ମାତ୍ର ଏହି ଏକନାୟକତ୍ୱର ପ୍ରକୃତି ହେଉଚି ଔପନିବେଶିକ ଓ ଅର୍ଦ୍ଧ ଔପନିବେଶିକ । କମ୍ୟୁନିଷ୍ଟ ବିରୋଧୀ ଅଭିଯାନର ଚୁରିବର୍ଷ ଭିତରେ ( ୧୯୨୭ରୁ ୧୯୩୧ ସେପ୍ଟେମ୍ବର ୧୮ ତାରିଖ ) ଏକ 'ମାଞ୍ଚୁକୋ' ପ୍ରତିଷ୍ଠିତ ହୋଇଥିଲା । ତା ପର ଛବର୍ଷରେ ଜାପାନୀ ସାମ୍ରାଜ୍ୟବାଦୀ ମାନେ ଚୀନ ଭୂମି ଭିତରକୁ ପ୍ରବେଶ କରିଗଲେ । ଯଦି ଅନ୍ୟ କେହି ଆଉ ଦଶବର୍ଷ କମ୍ୟୁନିଷ୍ଟ ବିରୋଧୀ ଅଭିଯାନ ଚଳାଇବାକୁ ଉଦ୍ୟମ କରେ, ତେବେ ସେପରି କମ୍ୟୁନିଷ୍ଟ ବିରୋଧୀ ଅଭିଯାନ ପୁରୁଣା ଢଙ୍ଗଠାରୁ ଅଲଗା ଏକ ନୂଆଢ଼ଙ୍ଗରେ ହେବ । ଏପରି ଏକ ନୂଆ ଢ଼ଙ୍ଗର କମ୍ୟୁନିଷ୍ଟ ବିରୋଧୀ ଅଭିଯାନ ଚଲା ଗଲାଣି ଏବଂ "ତୋଫାନୀ" ଲୋକ ଏହାକୁ ଖୁବ୍ ସାହସର ସହିତ ଚଳାଉଛି । ସେ ନୂଆ ଢଙ୍ଗର କମ୍ୟୁନିଷ୍ଟ ବିରୋଧୀ ଅଭିଯାନକାରୀ ଆଉ କେହି

ନୁହିଁ । ସେ ହେଉଛନ୍ତି ଓ୍ୟାଙ୍ଗ୍ ଚ୍ୟାଙ୍ଗ୍ ଓ୍ୱି, କାହାର ଯଦି ଇଚ୍ଛାହୁଏ ସେ ଓ୍ୟାଙ୍ଗ୍ ଚ୍ୟାଙ୍ଗ୍ ଓ୍ୱିଙ୍କ ସଙ୍ଗେ ଭାଗୀଦାର ହୋଇପାରେ କିନ୍ତୁ ତାପରେ ଯଦି ସିଏ ବୁର୍ଜୁୟା ଏକନାୟକତ୍ୱ ପୁଂଜିବାଦୀ ସମାଜ, କେମାଲ୍ ବାଦ୍, ଅଧୁନିକ ଜାତି ଓ 'ଏକଦଳ ଏକ ନୀତି' ଇତ୍ୟାଦି କଥା ତୁଣ୍ଡରେ ଧରେ ତାକୁ ଟିକିଏ ଲଜ୍ଜା ବୋଧ ହେବନାହିଁ ? ଯଦି ସେ ଓ୍ୟାଙ୍ଗ୍ ଚ୍ୟାଙ୍ଗ୍ ଓ୍ୱି ଗୋଷ୍ଠୀ ସଙ୍ଗେ ଯୋଗ ଦେବ ନାହିଁ, ତାହାହେଲେ ତାକୁ ଜାପାନ ବିରୋଧୀ ଲୋକଙ୍କ ସଙ୍ଗେ ଯୋଗ ଦେବାକୁ ପଡ଼ିବ । ଯଦି ସେ ଜାପାନ-ବିରୋଧୀ ଲୋକଙ୍କ ସଂଗେ ଯୋଗ ଦେଇ ସୁଦ୍ଧା ସେମାନଙ୍କୁ ନାତି ମାରି ବିଦାକରି ଦବାକୁ ଉଦ୍ୟମ କରେ ଓ ଜାପାନ ବିରୋଧୀ ସଂଗ୍ରାମର ସୁଫଳ ଯାକ ଏକାକୀ ଭୋଗ କରିବାକୁ କିଂବା ପୁଣି ଥରେ "ଏକଦଳୀୟ-ଏକନାୟକତ୍ୱ" ଦୀର୍ଘଜୀବୀ ହେଉ ର ଗାନ ଗାଇବାକୁ ଇଚ୍ଛା କରୁଥାଏ, ତେବେ ସେ ଖାଲି ସ୍ୱପ୍ନ ଦେଖୁଛି ବୋଲି କୁହାଯିବ ।

ଆହା, ଜାପାନ ବିରୋଧୀ ଯୁଦ୍ଧରେ ବାହାଦୂରି କାହାର ? ଶ୍ରମିକ, କୃଷକ ଓ ପେଟି ବୁର୍ଜୁୟାଙ୍କୁ ଛାଡ଼ି କେହି ପାଦେ ଆଗେଇ ପାରିବ ନାହିଁ । ଯିଏ ଏମାନଙ୍କୁ ନାତି ମାରିବାକୁ ଚେଷ୍ଟା କରିବ ତା ଅଣ୍ଟୁଗଣ୍ଠି ଛୁଡ଼ିଯିବ । ଏହା କଣ ସାଧାରଣ ଜ୍ଞାନ ନୁହିଁ ? କିନ୍ତୁ ଚୀନ ବୁର୍ଜୁୟାଙ୍କ ଭିତରେ ଯେଉଁମାନେ ଜିଦ୍‌ଖୋର ( ମୁଁ ଜିଦ୍-ଖୋର କହୁଛି ) ସେମାନେ ଗତ କୋଡିଏ ବର୍ଷ ଅଭିଜ୍ଞତାରୁ କିଛି ଶିଖି ନାହାନ୍ତି । "କମ୍ୟୁନିଜିମକୁ ରୋକିଦିଅ, କମ୍ୟୁନିଷ୍ଟଙ୍କୁ ଭାଙ୍ଗି ଦିଅ, କମ୍ୟୁନିଷ୍ଟଙ୍କ ବିରୋଧ କରିବୁ" ସେମାନଙ୍କ ଏହି ସବୁ ଚିତ୍କାର କ'ଣ ଶୁଣୁନାହିଁ ? 'ବିଦେଶୀ ଦଳର କାର୍ଯ୍ୟକଳାପ ନିରୋଧ ଆଇନ' ପରେ ପୁଣି କ'ଣ ଦେଖୁନାହିଁ ଯେ ସେମାନେ ବିଦେଶୀ ଦଳ ପ୍ରତି ବ୍ୟବହାର କରାଯିବା ଆଇନ", "ବିଦେଶୀ ଦଳର କାର୍ଯ୍ୟକ୍ରମର

ନିଯୁକ୍ତିଶ ଆଇନ” ସବୁ ଗଢ଼ିଛନ୍ତି ? ହତଭାଗା । ସେମାନେ ଏଇ “ନିରୋଧ”, “ବ୍ୟବହାର” ପ୍ରଭୃତି କଥା ଅବଶ୍ରାନ୍ତ ଭାବେ କରି ଆମ ଦେଶର ଭାଗ୍ୟକୁ କୁଆଡ଼େ ଘେନିଯିବେ ? ସେମାନଙ୍କ ନିଜ ଭବିଷ୍ୟତକୁ ନିର୍ମାଣ କରିବାକୁ ସେମାନେ କଣ କରିବାକୁ ଯାଉଛନ୍ତି ? ଏହି ଭଦ୍ରଲୋକମାନଙ୍କୁ ଆମର ସନିର୍ବନ୍ଧ ନିବେଦନ ଯେ ସେମାନେ ଚୀନ ଓ ପୃଥିବୀ ପ୍ରତି ଆଖି ପକେଇ ଦେଖନ୍ତୁ ପ୍ରକୃତ ଅବସ୍ଥା କଣ ? ଆଉ ପୁନର୍ବାର ଭୁଲ କରନାହିଁ । ଯଦି ଏହାପରି ଭୁଲ କରିଚାଲି ତାହାହେଲେ ତମର ତ ମଙ୍ଗଳ ହେବନାହିଁ। ଅପରପକ୍ଷେ ଦେଶର ଭାଗ୍ୟ ପକ୍ଷରେ ଏହା ହାନିକାରକ । ଏକଥା ଯଥାର୍ଥ, ନିଶ୍ଚିତ ଓ ସତ୍ୟ ଯେ ଯଦି ଚୀନ ବୁର୍ଜୁୟା ଭିତରେ ଏହି ଜିଦ୍‌ଖୋର ଲୋକେ ତଥାପି ଆଖି ଖୋଲି ନ ଦେଖନ୍ତି, ତେବେ ସେମାନଙ୍କର ଉପକାର ହେବନାହିଁ । ସେମାନେ ଆତ୍ମହତ୍ୟା କରି ମରିବେ । ତେଣୁ ଆମର ଆଶା ଯେ ମିଳିତ ଜାପାନ ବିରୋଧୀ ସାମୁଖ୍ୟ କୌଣସି ଏକ କୁଚକ୍ରୀ ଗୋଷ୍ଠୀର ଏକଚାଟିଆ ହୋଇ ରହିବ ନାହିଁ । ବରଂ ଜାପାନବିରୋଧୀ ଯୁଦ୍ଧରେ ବିଜୟ ଲାଗି ଏହା ସମସ୍ତଙ୍କ ସହଯୋଗରେ ଚାଲିବ । ଆଉ ସବୁ କଥା ଖାଲି ମିଛ ମସିଣା । ଆମ କମ୍ୟୁନିଷ୍ଟମାନଙ୍କର ଆନ୍ତରିକ ଉପଦେଶ ଯେ “ଆଗରୁ ତୁମକୁ ସତର୍କ କରି ଦେଇନାହୁଁ ବୋଲି ଆମକୁ ପରେ ଦୋଷ ଦିଅନାହିଁ ।”

“ଗୋଟିଏ ଥିଲେ ସମସ୍ତେ ବାଣ୍ଟି ନିଅ” ଏମିତି ଏକ ପୁରାତନ ବାକ୍ୟ ଅଛି । ଭୂତ ପୂର୍ବ ସଭାପତି ଲିୟୁଆନ୍‌ହୁଙ୍ଗ୍ ଏକଥା କହିଥିଲେ । ଏବଂ ଏହା ଏକ ଯୁକ୍ତିଯୁକ୍ତ ବାକ୍ୟ । ଯେ ହେତୁ ଶତ୍ରୁ ବିରୁଦ୍ଧରେ ଆମେ ସମସ୍ତେ ଲଢୁଚେ, ତେଣୁ ଏଇଟା ଯୁକ୍ତିଯୁକ୍ତ କଥା

ଯେ ଆମେ ମିଳିତଭାବେ ଗ୍ରହଣ କରିବୁ କାମ ବା ପୁସ୍ତକ ବାଣ୍ଟିନେବା । "ମୁଁ ସବୁନେବି", "ମୋର କେହି କିଛି କରି ପାରିବେ ନାହିଁ" ଏପରି ମନୋଭାବ ହେଉଛି ସାମନ୍ତବାଦୀ ରଜା ରାଜୁଡ଼ାଙ୍କ ପୁରାତନ କୂଟଚକ୍ରାନ୍ତ । ବିଂଶ ଶତାବ୍ଦୀର ଚତୁର୍ଥ ଓ ୫ମ ଦଶନ୍ଧିରେ ଏକଥା ଖାଟିବ ନାହିଁ ।

ଆମେ କମ୍ୟୁନିଷ୍ଟମାନେ ବିପ୍ଳବୀଲୋକଙ୍କୁ ଦୂର୍ ଦୂର୍ କରୁନାହୁଁ (ସେମାନେ ଯଦି ଶତ୍ରୁ ପାଖରେ ଆତ୍ମ ସମର୍ପଣ କରୁ-ନଥିବେ ଓ କମ୍ୟୁନିଷ୍ଟଙ୍କ ବିରୋଧ କରୁନଥିବେ) । ଯେଉଁମାନେ ଜାପାନ ବିରୁଦ୍ଧରେ ଶେଷ ପର୍ଯ୍ୟନ୍ତ ଲଢ଼ିବେ ଆମେ ସେପରି ଶ୍ରେଣୀ, ସ୍ତର, ରାଜନୈତିକଦଳ, ରାଜନୈତିକ ଗୋଷ୍ଠୀ ଓ ବ୍ୟକ୍ତି ବିଶେଷଙ୍କ ସଙ୍ଗେ ମିଳିତ ସାମ୍ମୁଖ୍ୟରେ ବରାବର ରହିବୁ ଏବଂ ବହୁଦିନଯାଏ ସେମାନଙ୍କ ସଙ୍ଗେ ସହଯୋଗ କରିବୁ । ମାତ୍ର ଆମକୁ ଦୂରେଇଦେବାକୁ ବା ମିଳିତ ସାମ୍ମୁଖ୍ୟକୁ ଭାଙ୍ଗିଦେବାକୁ ଯିଏ ଚେଷ୍ଟା କରିବ, ଆମେ ତାହା ବରଦାସ୍ତ କରିବୁ ନାହିଁ । ଚୀନ ପ୍ରତିରୋଧ କରିଚାଲିବ, ନିଜ ଶକ୍ତିକୁ ସଂହତ କରୁଥିବ ଓ ଅଗ୍ରଗତି କରିଚାଲିବ । ଯିଏ ଆତ୍ମସମର୍ପଣ କରିବାକୁ ଚାହିଁବ ବା ମେଣ୍ଟ ଭାଙ୍ଗିବାକୁ ଚାହିଁବ ବା ପଛକୁ ହଟେଇ ଦେବାକୁ ଇଚ୍ଛା କରିବ ଆମେ ସେମାନଙ୍କୁ ବରଦାସ୍ତ କରିବୁ ନାହିଁ ।

—୮—

## "ବାମପନ୍ଥୀ" ଅବାସ୍ତବ ତତ୍ତ୍ୱବାଦର ଖଣ୍ଡନ

ବୁର୍ଜୁୟା ଏକନାୟକତ୍ୱ ସହିତ ପୁଞ୍ଜିବାଦ ପଥରେ ଯଦି ଆମର ଯିବା ଅସମ୍ଭବ ତେବେ ସର୍ବହରା ଏକନାୟକତ୍ୱ ସହିତ

ସମାଜବାଦ ପଥରେ ଯିବା କ'ଣ ସମ୍ଭବ ? ନା । ତାହା ମଧ୍ୟ ସେହିପରି ଅସମ୍ଭବ ।

ନିଃସନ୍ଦେହରେ କୁହାଯାଇପାରେ ଯେ ବର୍ତ୍ତମାନର ବିପ୍ଳବ ହେଉଚି ପ୍ରଥମ ସୋପାନ—ଦ୍ୱିତୀୟ ସୋପାନ ସମାଜବାଦ—ତାହା ଭବିଷ୍ୟତ୍‌ରେ ବିକାଶଲାଭ କରିବ । ଯେତେବେଳେ ଚୀନ ସେହି ସ୍ତରରେ ପହଞ୍ଚିବ ସେତେବେଳେ ଚୀନ କୃତାର୍ଥ ହେଲା ବୋଲି କହିବୁ । ମାତ୍ର ବର୍ତ୍ତମାନ ସମୟରେ ସମାଜବାଦ ପ୍ରଚଳନ କରିବାର ସମୟ ଆସିନାହିଁ । ଚୀନ-ବିପ୍ଳବର ବର୍ତ୍ତମାନ କର୍ତ୍ତବ୍ୟ ହେଉଚ୍ଛି ସାମ୍ରାଜ୍ୟବାଦ ବିରୋଧ ଓ ସାମନ୍ତବାଦ ବିରୋଧ ତାକୁ ସଫଳ ନକଲାଯାଏ ସମାଜବାଦ ହାସଲ କରିବାକୁ କହିବା ଅର୍ଥ ଫମ୍ପା ଆବାଜ ଉଠାଇବା । ଚୀନ ବିପ୍ଳବକୁ ଦୁଇ ସୋପାନରେ ବିଭକ୍ତ କରାଯିବ । ପ୍ରଥମ ସୋପାନ ନୂତନ ଗଣତନ୍ତ୍ର,—ଦ୍ୱିତୀୟ ସୋପାନ ସମାଜବାଦ । ଅଧିକନ୍ତୁ ପ୍ରଥମ ସୋପାନର କାଳ ମଧ୍ୟ କେବେହେଁ ଅଳ୍ପକ୍ଷଣ ସ୍ଥାୟୀ ନୁହେଁ । ଏହାକୁ ଏକା ରାତିକେ ହାସଲ କରି ହେବନାହିଁ । ଆମେ ଆକାଶକୁସୁମ ତୋଳାଳୀ ଲୋକ ନୋହୁଁ । ଆମ ଆଖି ଆଗରେ ଯେଉଁ ବାସ୍ତବ ଅବସ୍ଥା ରହିଚି ତାଠାରୁ ଆମେ ଅଲଗା ହୋଇ ରହିପାରୁନା ।

କେତେକ ଖଳ ପ୍ରକୃତିର ପ୍ରଚାରକ ଜାଣି ଶୁଣି ଏ ଦୁଇଟି ବିପ୍ଳବୀସ୍ତରକୁ ମିଶେଇଦେଇ "ଗୋଟିଏ ମାତ୍ର ବିପ୍ଳବ"ର ତତ୍ତ୍ୱ ବାଢ଼ନ୍ତି । ତା ଫଳରେ ସେମାନେ ପ୍ରମାଣ କରିବାକୁ ଚାହାନ୍ତି ଯେ ସାନ୍‌ମିନ୍‌ଚୁ ଆଇରେ ସମସ୍ତ ବିପ୍ଳବ ନିହିତ ରହିଚ୍ଛି ଓ ସାମ୍ୟବାଦର ସ୍ଥିତି ଆବଶ୍ୟକ ନୁହେଁ । ଏହି "ତତ୍ତ୍ୱ"କୁ ଧରି ସେମାନେ ବାସ୍ତବ କ୍ଷେତ୍ରରେ ସାମ୍ୟବାଦ, କମ୍ୟୁନିଷ୍ଟପାର୍ଟି, ଅଷ୍ଟମବାହିନୀ ଓ ନୂଆ

୪ର୍ଥ ବାହିନୀ ଏବଂ ସେନ୍‌ସି-କାନ୍‌ସୁ ଉପାନ୍ତ ଅଞ୍ଚଳ ସରକାରର ବିରୋଧ କରନ୍ତି । ସେମାନଙ୍କର ଲକ୍ଷ୍ୟ ହେଲା ବିପ୍ଳବ ଯାହା କିଛି ଅଛି ତାକୁ ମୂଳରୁ ନିର୍ମୂଳ କରିବା, ବୁର୍ଜୁୟା-ଗଣତାନ୍ତ୍ରିକ ବିପ୍ଳବର ପୂର୍ଣ୍ଣତା ହାସଲର ଓ ଜାପାନ ବିରୋଧୀ ପ୍ରତିରୋଧ ସଂଗ୍ରାମର ବିରୋଧ କରିବା ଏବଂ ଭବିଷ୍ୟତ୍‌ରେ ଜାପାନୀଦସ୍ୟୁମାନଙ୍କ ନିକଟରେ କିପରି ଆତ୍ମ ବିକ୍ରୟ କରିବେ ସେଥିଲାଗି "ଜନମତ" ସୃଷ୍ଟି କରିବା ।

ଉହାନ୍ ଦଖଲ ପରେ ବି କେବଳ ସାମରିକଶକ୍ତି ଦ୍ବାରା ଚୀନକୁ ପଦାନତ କରି ନ ହେବା ଦେଖି ଜାପାନୀମାନେ ଇଚ୍ଛାକରି ଏପରି ଅବସ୍ଥା ସୃଷ୍ଟି କରିଛନ୍ତି । ସେମାନେ ରାଜନୈତିକ ଅଭିଯାନ ଆରମ୍ଭ କରିଛନ୍ତି ଓ ଅର୍ଥ ନୈତିକ ପ୍ରଲୋଭନ ଦେଖାଉଛନ୍ତି । ଜାପାନବିରୋଧୀ ଶିବିରରେ ଯେଉଁ ଦୋହଲପୋହଲ ଲୋକ ଅଛନ୍ତି ସେମାନଙ୍କୁ ରାଜନୈତିକଭାବେ ପ୍ରଲୋଭନ ଦେଖାଉଛନ୍ତି । ଉଦ୍ଦେଶ୍ୟ ହେଉଚି ମିଳିତସାମ୍ମୁଖ୍ୟକୁ ଭାଗ ଭାଗ କରିଦେବା ଓ କୋମିନ୍‌ତାଙ୍ଗ୍ —କମ୍ୟୁନିଷ୍ଟ ସହଯୋଗକୁ ବିନଷ୍ଟ କରିଦେବା ।

ଅର୍ଥନୈତିକଭାବେ "ଶିଳ୍ପ ସହଯୋଗ"ର ଚକ୍ରାନ୍ତ ସେମାନେ ମେଲାଇଛନ୍ତି । ଜାପାନୀ ଦସ୍ୟୁମାନେ ଏହା ଫଳରେ ଚୀନ ପୁଞ୍ଜିପତିମାନଙ୍କୁ କେନ୍ଦ୍ର ଓ ଦକ୍ଷିଣ ଚୀନରେ "ସହଯୋଗ ମୂଳକ" ଶିଳ୍ପରେ ଶତକଡ଼ା ୫୧ ଭାଗ ଓ ଉତ୍ତର ଚୀନରେ ଶତକଡ଼ା ୪୯ ଭାଗ ଅଂଶ ଦେବାକୁ କହୁଚନ୍ତି ଏବଂ ଯେଉଁ ଶିଳ୍ପ ସବୁ ଚୀନ ପୁଞ୍ଜିପତିମାନଙ୍କର ବାଜ୍ୟାପ୍ତ କରିଥିଲେ ତାକୁ ଫେରାଇଦେଇ ସେ ସବୁକୁ ମଧ୍ୟ ଏହି ପୁଞ୍ଜିରଅଂଶ ହିସାବରେ ଗ୍ରହଣ କରିବେ ବୋଲି ପ୍ରସ୍ତାବ ଦେଉଛନ୍ତି । ଏହି କୌଶଳ ପାଲରେ ପଡ଼ି ଓ୍ୟାଙ୍ଗ୍

ଚ୍ୟାଙ୍ଗ୍‌ଙ୍କ ପ୍ରତିନିଧିତ୍ୱ କରୁଥିବା କେତେକ ଅବିବେକୀ ପୁଞ୍ଜିପତି ବ୍ୟକ୍ତିଗତ ଲାଭଦୃଷ୍ଟିରୁ ନ୍ୟାୟକୁ ବଳି ଦେଇ ଶତ୍ରୁ ପାଖରେ ଆତ୍ମ ସମର୍ପଣ କରିଛନ୍ତି । ଆଉ ଯେଉଁମାନେ ଜାପାନବିରୋଧୀ ସାମ୍ମୁଖ୍ୟରେ ଏବେବି ଲାଗି ରହିଛନ୍ତି ସେମାନେ ମଧ୍ୟ ଯିବାକୁ ମନ ବଳାଉଛନ୍ତି ମାତ୍ର ସେମାନେ ଭୀରୁ ଏବଂ କମ୍ୟୁନିଷ୍ଟମାନେ ସେମାନଙ୍କ ବାଟ ଓଗାଳିବେ ଓ ଲୋକେ ସେମାନଙ୍କୁ ବିଶ୍ୱାସଘାତକ ବୋଲି ରଟନା କରିବେ ଏହି କଥାକୁ ଡରୁଛନ୍ତି ତେଣୁ ସେମାନେ ଆଗରୁ ସାଂସ୍କୃତିକ ଓ ସମ୍ବାଦପତ୍ର କ୍ଷେତ୍ରରେ କେତେକ ପ୍ରସ୍ତୁତି କାର୍ଯ୍ୟ କରିବାଲାଗି ନିଜ ନିଜ ଲୋକଙ୍କୁ ଯେନି ଏକାଠି ବସୁଛନ୍ତି ଓ ନିଷ୍ପତ୍ତିମାନ ନେଉଛନ୍ତି । ଏମିତି ଯୋଜନା ହେବା ଦ୍ୱାରା ସଙ୍ଗେ ସଙ୍ଗେ ସେମାନେ କାଳବିଳମ୍ବ ନ କରି କାମ ଆରମ୍ଭ କରିଦେଇଛନ୍ତି । କେତେକ "ଅଧାର୍ମିକ ବଦମାସ"ଙ୍କୁ ସଂଗଠିତ କରାଯାଉଛି, କମ୍ୟୁନିଷ୍ଟ-ମାନଙ୍କ ବିରୁଦ୍ଧରେ କେତେକି ଟ୍ରଟସ୍କି ପନ୍ଥୀଙ୍କୁ ଭଡ଼ାରଖି ଲେଖାଲେଖି କରିଆରେ ପାଗଳ ଚିତ୍କାର ଆରମ୍ଭ ହୋଇଛି । ଏହାର ଫଳ ସ୍ୱରୂପ କେତେକ "ତତ୍ତ୍ୱ" ଆବିଷ୍କାର କରା ଯାଇଛି—ଯଥା "ଗୋଟିଏ ମାତ୍ର ବିପ୍ଳବ"; ଚୀନମାଟିରେ ସାମ୍ୟବାଦ ଉଧେଇବ ନାହିଁ; କମ୍ୟୁନିଷ୍ଟ ପାର୍ଟି ରହିବାର ଅବଶ୍ୟକତା ନାହିଁ, ଅଷ୍ଟମ ବାହିନୀ ଓ ନୂଆ ଚତୁର୍ଥ ବାହିନୀ ପ୍ରତିରୋଧକୁ ନଷ୍ଟକରୁଛନ୍ତି ଓ ଗରିଲା ଯୁଦ୍ଧକୁ ଭଣ୍ଡୁର କରୁଛନ୍ତି; ସେଂସି-କାଂସୁ-ନିଂସା ନିଙ୍ଗସା ଉପାନ୍ତ ଅଞ୍ଚଳ କେବଳ ଏକ ସାମନ୍ତବାଦୀ ଭାଗବଣ୍ଟୁଆରା; କମ୍ୟୁନିଷ୍ଟ ପାର୍ଟି ସରକାର ପ୍ରତି ଅନୁରକ୍ତ ନୁହେଁ ଓ ସେ ମିଳନରେ ବ୍ୟାଘାତ ଜନ୍ମାଉଛି ଷଡ଼ଯନ୍ତ୍ରକୁ ତେଜୋଉଛି ଆଉ ଗୋଳମାଳ ସୃଷ୍ଟି କରୁଛି ଇତ୍ୟାଦି । ଏସବୁ ଉଠାଇବାର କାରଣ ହେଉଚି ଯେ ଯେଉଁମାନେ ପ୍ରକୃତ ଅବସ୍ଥାକୁ ଠିକ୍‌ମତେ ବୁଝିପାରୁ ନାହାନ୍ତି ତାଙ୍କୁ ଭଣ୍ଡେଇବା ଓ

ଠିକଣାବେଳେ ସାରା ଜାତିର ସ୍ୱାର୍ଥ ବଦଳରେ ପୁଂଜିପତିମାନେ ଶତକଡ଼ା ୫୧ ଭାଗ ଓ ୪୯ ଭାଗ ଅଂଶର ଫଳଭୋଗ କରିବାକୁ ଯୁକ୍ତି ସଜାଡ଼ି ରଖିବା । ଅମ୍ଳିବାବିସ୍ଥ କଲ୍ପପୂର୍ବରୁ ସେମାନଙ୍କର ଏପରି କୌଶଳ ହେଉଚି ଲୋକମନ ଓ "ଲୋକମତ"କୁ ତିଆରି କରିବା । ସାମ୍ୟବାଦ ଓ କମ୍ୟୁନିଷ୍ଟ ପାର୍ଟିର ବିରୋଧ କରିବାକୁ ଯେତେବେଳେ ଏହି ଭଦ୍ରଲୋକମାନେ "ଗୋଟିଏ ମାତ୍ର ବିପ୍ଳବ"ର "ତତ୍ତ୍ୱ" ବାଢ଼ନ୍ତି ସେତେବେଳେ ସେମାନେ ଖୁବ୍ ଗମ୍ଭୀର ଜଣା ପଡ଼ନ୍ତି, ମାତ୍ର ସେମାନଙ୍କ ହୃଦୟରେ ଶତକଡ଼ା ୫୧ ଭାଗ ଓ ୪୯ ଭାଗ ପାଇବାଛଡ଼ା ଆଉ କିଛି ସ୍ଥାନ ପାଇନାହିଁ । କେତେ ସେମାନେ ମୁଣ୍ଡ ଖଟେଇ ନାହାନ୍ତିଟି । "ଗୋଟିଏ ମାତ୍ର ବିପ୍ଳବ"ର ତତ୍ତ୍ୱ ହେଉଛି "ଆଦୌ ବିପ୍ଳବ ନୁହିଁ" । ଏ ପଶୁମାନଙ୍କର ଏହାହିଁ ଅସଲ ପ୍ରକୃତି ।

ମାତ୍ର ଆଉ କେତେକ ଲୋକ ଅଛନ୍ତି ଯେମାନେ ଖଳ ପ୍ରକୃତିର ନୁହନ୍ତି । ମାତ୍ର ସେମାନେ ବି "ଗୋଟିଏ ମାତ୍ର ବିପ୍ଳବ" ତତ୍ତ୍ୱରେ ମୁଗ୍ଧ ହୁଅନ୍ତି । "ଏକାମାଡ଼କେ ରାଜନୈତିକ ଓ ସାମାଜିକ ବିପ୍ଳବ" କରିଦେବେ ବୋଲି ମନୋଗତ ଚିନ୍ତା କରନ୍ତି । ବିପ୍ଳବ ଯେ ଦୁଇଟି ସ୍ତରରେ ବିଭକ୍ତ ସେମାନେ ଏକଥା ବୁଝନ୍ତି ନାହିଁ । ଆମେ ଗୋଟିଏ ସ୍ତରରୁ ଅନ୍ୟସ୍ତରକୁ ଯିବୁ ମାତ୍ର "ଏକା ମାଡ଼କେ ସବୁହାସଲ" କରି ପାରିବୁ ନାହିଁ । ସେମାନଙ୍କର ଭ୍ରମାତ୍ମକ ଦୃଷ୍ଟିକୋଣ ବିପ୍ଳବ ମାର୍ଗରେ ସନ୍ଦେହ ସୃଷ୍ଟି କରେ ଓ ବର୍ତ୍ତମାନର କର୍ତ୍ତବ୍ୟ ପୂରଣ କରିବାକୁ ଉଦ୍ୟମରେ ବାଧା ଦିଏ ତେଣୁ ଏହା ଅତି କ୍ଷତିକାରକ । ଦ୍ୱିତୀୟ ସ୍ତର ଲାଗି ପ୍ରଥମ ସ୍ତରଟି ଆବଶ୍ୟକ ଏବଂ ଗୋଟିଏ ଅନ୍ୟଟିକୁ ନିବିଡ଼ ଭାବେ ଅନୁସରଣ

କରେ ଏବଂ ସେ ଦୁଇଟିସ୍ତରର ଭିତରେ ବୁର୍ଜୁୟା ଏକନାୟକତ୍ୱକୁ ପ୍ରବେଶ କରିବାକୁ ଅନୁମତି ଦିଏ ନାହିଁ । ଏହାହିଁ ନିଭୁଲ ଓ ବୈପ୍ଳବିକ ବିକାଶର ମାର୍କସବାଦୀ ତତ୍ତ୍ୱ । ଅନ୍ୟପକ୍ଷରେ ଯଦି କୁହାଯାଏ ଯେ ଗଣତାନ୍ତ୍ରିକ ବିପ୍ଳବର ଧାରାବାହୀ କର୍ତ୍ତବ୍ୟ କିଛି ନାହିଁ କିମ୍ବା ତାର ଧାରାବାହୀ ସମୟ ବୋଲି କିଛିନାହିଁ, ଏବଂ ଅନ୍ୟାନ୍ୟ କର୍ତ୍ତବ୍ୟ ଗୁଡ଼ିକ ଅନ୍ୟାନ୍ୟ ସମୟରେ ହାସଲ କରିହେବ, ଯଥା ସାମାଜିକ ବିପ୍ଳବର କର୍ତ୍ତବ୍ୟକୁ ଗଣତାନ୍ତ୍ରିକ ବିପ୍ଳବର କର୍ତ୍ତବ୍ୟ ସଂଗେ ମିଶେଇ ଦେଇ ହେବ, ତାହା ହେଲେ ଏପରି ଭ୍ରମ ଧାରଣା ଆଉ "ଏକାମାଡକେ ସବୁ ହାସଲ ହୋଇଯିବା" ନୀତିକୁ ପ୍ରକୃତ ବିପ୍ଳବୀମାନେ ଗ୍ରହଣ କରିବା ଉଚିତ ନୁହଁ ।

—ନଅ—

## କଚ୍‌ଖୋର ଲୋକଙ୍କ ଯୁକ୍ତି ଖଣ୍ଡନ

ତା ପରେ ବୁର୍ଜୁୟା ଶ୍ରେଣୀର ଏଇ କଚ୍‌ଖୋର ଲୋକେ ଆସି କହନ୍ତି "ବେଶ୍ କଥା, ତୁମେ କମ୍ୟୁନିଷ୍ଟମାନେ ସମାଜବାଦୀ ସାମାଜିକ ବ୍ୟବସ୍ଥା ଯୁଗ ପରେ ହେବ ବୋଲି କହୁଚ ଏବଂ ଘୋଷଣା କରୁଚ ଯେ, 'ସାନମିନଚୁଆଇହିଁ ବର୍ତ୍ତମାନ ସମୟର ଆବଶ୍ୟକତା ଓ ଆମ ପାର୍ଟି ତାର ପୂର୍ଣ୍ଣ ସଫଳତା ଲାଗି ସଂଗ୍ରାମ କରିବାକୁ ଇଚ୍ଛୁକ', ତାହା ହେଲେ କିଛିକାଳ ପାଇଁ କମ୍ୟୁନିଜିମକୁ ଗଣ୍ଠିଲି ବାନ୍ଧି ସାଇତି ଦେଉ ନାହଁ କାହିଁକି ? "ଏକ ତତ୍ତ୍ୱ"ର ବାହାନାରେ ଏହି ଯୁକ୍ତି ବାଡ଼ି ଏବେ ଭାରି ବଡ ପାଗଳ ଚିତ୍କାର ହେଉଚି । ଏପରି ପାଗଳ ପ୍ରଳାପର ପ୍ରକୃତି ହେଉଚି ବୁର୍ଜୁୟା-ଏକନାୟକତ୍ୱର ନୀତି । ଠିକ୍‌ଏ ଭଦ୍ରଭାବରେ କହିବାକୁ ଇଚ୍ଛା କଲେ, ଯାହାକୁ କୁହାଯିବ ସାଧାରଣ ଜ୍ଞାନର ଅଭାବ ।

ସାମ୍ୟବାଦ ( କମ୍ୟୁନିଜିମ୍-ଅନୁବାଦକ ) ହେଉଛି ସର୍ବ-ହରାର ଆଦର୍ଶ ଏବଂ ଏକପ୍ରକାର ନୂଆ ସାମାଜିକ ବ୍ୟବସ୍ଥା । ଏହା ଅନ୍ୟ ଯେକୌଣସି ସାମାଜିକ ବା ଆଦର୍ଶଗତ ବ୍ୟବସ୍ଥାଠାରୁ ଭିନ୍ନ । ମାନବ ଇତିହାସରେ ଏହା ସବୁଠୁଁ ସଂପୂର୍ଣ୍ଣ, ସବୁଠୁଁ ପ୍ରଗତିଶୀଳ, ସବୁଠୁଁ ବିପ୍ଳବୀ ଏବଂ ସବୁଠୁଁ ଯୁକ୍ତି ସଂଗତ ସାମାଜିକ ଓ ଆଦର୍ଶଗତ ବ୍ୟବସ୍ଥା । ସାମନ୍ତବାଦୀ ଆଦର୍ଶ ଓ ସାମାଜିକ ବ୍ୟବସ୍ଥା ବର୍ତ୍ତମାନ ଇତିହାସର ଯାଦୁଘରର ଲାଗି ଯୋଗ୍ୟ । ପୁଞ୍ଜି-ବାଦର କୋଟିଏ ଅଂଶ ମଧ୍ୟ ସେଇ ଯାଦୁଘର ଲାଗି ଯୋଗ୍ୟ [ ସୋଭିଏଟ୍ ରୁଷ୍‌ରେ ] । ଆଉ ଯେଉଁ ଅଂଶତକ ରହି ଯାଇଛି ସେତ "ଅସ୍ତଗାମୀ ସୂର୍ଯ୍ୟ ପରି, ଶେଷ ନିଶ୍ୱାସ ନେଉଛି" ଏବଂ "ସନ୍ଧ୍ୟା ଯାଏ ବଂଚିବ କି ନାହିଁ ଏକଥା ସକାଳେ ଜାଣିନାହିଁ" । କେବଳ ମାତ୍ର କମ୍ୟୁନିଷ୍ଟ ଆଦର୍ଶ ଓ ସାମାଜିକ ବ୍ୟବସ୍ଥା ବିରାଟ ବଜ୍ରନାଦିତ ଶକ୍ତିରେ ବଢ଼ି ଚାଲେ ଓ ପ୍ରଚାର ଲଭେ । ତାହାହିଁ କେବଳ ପର୍ବତକୁ ସମତଳ ଓ ସମୁଦ୍ରକୁ ପର୍ବତରେ ପରିଣତ କରିପାରେ ଓ ବିକାଶମୁଖୀ ଯୌବନକୁ ବଜାୟ ରଖିପାରେ । ଚୀନରେ ବୈଜ୍ଞାନିକ ସାମ୍ୟବାଦ ପ୍ରବର୍ତ୍ତନ ହେଲା ଦିନୁଁ, ଚୀନଲୋକଙ୍କର ଦୃଷ୍ଟିକୋଣ ଖୁବ୍ ବ୍ୟାପକ ହୋଇ ଯାଇଛି ଓ ଚୀନଲୋକଙ୍କର ଖୁବ୍ ପରିବର୍ତ୍ତନ ହୋଇଛି । ସାମ୍ୟବାଦର ନେତୃତ୍ୱ ବିନା ବିପ୍ଳବର ଶେଷ ସ୍ତର ତ ଦୂରର କଥା, ଏମିତକି ଗଣତାନ୍ତ୍ରିକ ବିପ୍ଳବ ମଧ୍ୟ ସଫଳ ହୋଇ ପାରିବନାହିଁ । ଏହି ପ୍ରକୃତ କାରଣରୁହିଁ ଚୀନ ବୁର୍ଜୁୟାର ଜିଦ୍-ଖୋର ଲୋକେ ଏପରି ଉଚ୍ଚ ଚିତ୍କାର କରୁଛନ୍ତି ଓ ସାମ୍ୟବାଦ "ଗଣ୍ଠିଲି" ବାନ୍ଧି ବୋଲି ଦାବୀ କରୁଛନ୍ତି । ଥରେ ଏହା "ଗଣ୍ଠିଲି" ବାନ୍ଧିଲେ ଚୀନ ଧ୍ୱଂସର ସମ୍ମୁଖୀନ ହେବ । ସାମ୍ୟବାଦ ଉପରେ

ପୃଥିବୀ ନିଜର ମୁକ୍ତି ଲଗି ନିର୍ଭର କରୁଛି—ତେଣୁ ଚୀନ ମଧ୍ୟ ନିଜ ମୁକ୍ତି ଲଗି ସାମ୍ୟବାଦ ଉପରେ ନିର୍ଭର କରୁଛି ।

ପ୍ରତ୍ୟେକ ଜାଣନ୍ତି ଯେ ସାମାଜିକ ବ୍ୟବସ୍ଥା ଓ କାର୍ଯ୍ୟକ୍ରମ ସଂବନ୍ଧରେ କମ୍ୟୁନିଷ୍ଟ ପାର୍ଟିର ଗୋଟିଏ ବର୍ତ୍ତମାନର କାର୍ଯ୍ୟକ୍ରମ ଓ ଅନ୍ୟଟି ଭବିଷ୍ୟତ୍‌ର କାର୍ଯ୍ୟକ୍ରମ ରହିଛି । ସେ ଦୁଇଟି ସର୍ବନିମ୍ନ କାର୍ଯ୍ୟକ୍ରମ ଓ ସର୍ବୋଚ୍ଚ କାର୍ଯ୍ୟକ୍ରମ ନାମରେ ଜଣାଶୁଣା । ବର୍ତ୍ତମାନ ତାହା ହେଉଚି ନୂତନ ଗଣତନ୍ତ୍ର ଆଉ ଭବିଷ୍ୟତରେ ହେଉଚି ସମାଜବାଦ ଏ ଦୁଇଟି ଗୋଟିଏ ଦେହର ଦୁଇଟି ଅଂଶ ଅର୍ଥାତ୍ କମ୍ୟୁନିଷ୍ଟ ଚିନ୍ତା ବ୍ୟବସ୍ଥାର ଏହା ଦୁଇଟି ଅଂଶ । ତେଣୁ ଖାଲି ସାନ୍‌ମିନଚୁଆଇର ରାଜନୈତିକ ନୀତି ମୂଳତଃ କମ୍ୟୁନିଜିମର ସର୍ବନିମ୍ନ କାର୍ଯ୍ୟକ୍ରମ ସଂଗେ ମେଳ ଖାଉଥିବାରୁ ତାକୁ "ଗଣ୍ଡିଲ" ବାନ୍ଧି ଦେବାକୁ ଦାବୀ କରିବା ଅଯୌକ୍ତିକ ନୁହଁ କି ? ଆମେ କମ୍ୟୁନିଷ୍ଟ ମାନେ କାହିଁକି ସାନମିନଚୁଆଇକୁ ଗ୍ରହଣ କରିଛୁ, ତାର ଏକମାତ୍ର କାରଣ ଯେ କମ୍ୟୁନିଷ୍ଟ ପାର୍ଟିର ସର୍ବନିମ୍ନ କାର୍ଯ୍ୟକ୍ରମ ସଂଗେ ସାନ-ମିନଚୁଆଇର ମେଳ ଖାଉଥିବା କେତେକ କଥା ରହିଚି । ତେଣୁ ଜାପାନ ବିରୋଧୀ ମିଳିତ ସାମ୍ମୁଖ୍ୟ ଲଗି ସାନମିନଚୁଆଇ ଯେ ରାଜନୈତିକ ଭିତ୍ତି ତାହା ସ୍ୱୀକାର କରିବା ଲଗି ଆମ ପକ୍ଷେ ସମ୍ଭବପର ହୋଇଛି । ଆଉ ମଧ୍ୟ ବର୍ତ୍ତମାନ ଚୀନରେ ସାନ୍‌ମିନ୍‌ଚୁଆଇର ଆବଶ୍ୟକତା ରହିଛି । ଆମ ପାର୍ଟି ମଧ୍ୟ ଏହାକୁ ପୂର୍ଣ୍ଣଭାବେ ହାସଲ କରିବା ଲଗି ସଂଗ୍ରାମ କରିବାକୁ ପ୍ରସ୍ତୁତ । ଏ ସବୁକଥା ସେଥିରେ ନ ଥିଲେ ଆମ ପକ୍ଷେ ତାକୁ ଗ୍ରହଣ କରିବା ସମ୍ଭବ ହୋଇ ନ ଥାନ୍ତା ।

ଗଣତାନ୍ତ୍ରିକ ବିପ୍ଳବ ଯୁଗରେ ସାମ୍ୟବାଦ ଓ ସାନମିନଚୁଆଇର ଏହା ମିଳିତ ସାମ୍ମୁଖ୍ୟ । ଏହି ମିଳିତ ସାମ୍ମୁଖ୍ୟ କଥା ଦର୍ଶାଇ ଡାକ୍ତର ସୁନ୍‌ୟାତ୍‌ସେନ୍ କହିଥିଲେ "ସାନ୍‌ମିନ୍‌ଚୁଆଇର ସାମ୍ୟବାଦ ଏକ ଉତ୍ତମବନ୍ଧୁ"। ତେଣୁ ସାମ୍ୟବାଦକୁ ଅସ୍ୱୀକାର କରିବା ଅର୍ଥ ମିଳିତ ସାମ୍ମୁଖ୍ୟକୁ ଅସ୍ୱୀକାର କରିବା । ଜିଦ୍‌ଖୋର ଲୋକେ ସେମାନଙ୍କର "ଏକଦଳ" ନୀତି ଅବଲମ୍ବନ କରି ଏବଂ ମିଳିତ ସାମ୍ମୁଖ୍ୟକୁ ଅସ୍ୱୀକାର କରି କମ୍ୟୁନିଜିମ୍‌କୁ ଫିଙ୍ଗି ଦିଆଯାଉ ବୋଲି ଅସଙ୍ଗତ ଚିତ୍କାର କରୁଛନ୍ତି ।

"ଗୋଟିଏ ମାତ୍ର ନୀତି"ର ତତ୍ତ୍ୱ ବାଢ଼ିବା ମଧ୍ୟ ଅତି ଅଯୌକ୍ତିକ । ସମାଜରେ ବିଭିନ୍ନଶ୍ରେଣୀ ଥିବା ଯାଏ ଉକ୍ତ ବିଭିନ୍ନଶ୍ରେଣୀର ସଂଖ୍ୟା ଅନୁସାରେ ବିଭିନ୍ନ ନୀତି ରହିବ ଏବଂ ଏମିତିକି ଗୋଟିଏ ଶ୍ରେଣୀରେ ଥିବା ବିଭିନ୍ନ ଗୋଷ୍ଠୀଙ୍କର ଭିନ୍ନ ଭିନ୍ନ ନୀତି ମଧ୍ୟ ରହିବ । ଯଦି ସାମନ୍ତବାଦୀଙ୍କ ଲାଗି ସାମନ୍ତବାଦ, ପୁଂଜିବାଦୀଙ୍କ ପାଇଁ ପୁଂଜିବାଦ, ବୌଦ୍ଧମାନଙ୍କ ଲାଗି ବୌଦ୍ଧ ମତ ବାଦ, ଖ୍ରୀଷ୍ଟାନଙ୍କ ଲାଗି ଖ୍ରୀଷ୍ଟମତବାଦ, କୃଷକମାନଙ୍କ ଲାଗି ବହୁଈଶ୍ୱରବାଦ ରହିଛି ଓ ଆଜିକାଲିକା କେମାଲ୍‌ବାଦ, ଫାସିଷ୍ଟବାଦ, ଓ ସେଙ୍ଗବାଦ ପରିଶ୍ରମ ଅନୁଯାୟୀ ବଣ୍ଟନନୀତିବାଦ ରହିବ ତେବେ ସର୍ବହରା ଶ୍ରେଣୀର କମ୍ୟୁନିଜିମ୍ କାହିଁକି ନ ରହିବ ? ଏକ ସମୟରେ ଏତେ ଗୁଡିଏ ମତବାଦ ଥିବାସ୍ଥଳେ ସେମାନେ କମ୍ୟୁନିଜିମ୍ "ଟେଣ୍ଡିଲି ବାନ୍ଧି ଦେଉ" ବୋଲି କାହିଁକି ଦାବୀ କରିବେ । ସ୍ପଷ୍ଟ କହିବାକୁ ଗଲେ ଆମକୁ "ଟେଣ୍ଡିଲି ବାନ୍ଧିବାକୁ" କହିବା ନିରର୍ଥକ । ଆମକୁ ପ୍ରତି ଯୋଗିତା କରିବାକୁ ଦାବୀ କରିବା ବରଂ ଭଲ ହେବ । ଯଦି ଏହି ଦୌଡରେ ଆମକୁ କିଏ ହଟେଇଦିଏ ତାହାହେଲେ ତାହାହିଁ ଆମର ଭାଗ୍ୟ

ବୋଲି ଆମେ ସ୍ୱୀକାର କରୁନୁ । ତା ଯଦି ନହୁଏ ତେବେ ବରଂ ତୁମର ଗଣତନ୍ତ୍ର ବିରୋଧୀ "ଗୋଟିଏ ମାତ୍ର ନୀତି"ର ଗଣ୍ଠିଲି ବାନ୍ଧି ଦେବା ସଙ୍ଗତ ହେବ ।

ଯେମିତି କିଏ ଭୁଲ ନ ବୁଝେ ସେଥିଲାଗି ଓ ଜିଦ୍‌ଖୋର ଲୋକମାନଙ୍କର ଆଖି ଖୋଲି ଦେବାଲାଗି ସାନ୍‌ମିନଚୁଆଇ ଓ କମ୍ୟୁନିଜିମ୍ ଭିତରେ ମେଳ କେଉଁଠି ଓ ଅମେଳ କେଉଁଠି ତାହା ଆମର ଦେଖାଇ ଦେବା ଉଚିତ ।

ସାନ୍‌ମିନ୍‌ଚୁଆଇ ଓ କମ୍ୟୁନିଜିମ ଭିତରେ ଉଭୟ ମେଳ ଓ ଅମେଳ ରହିଛି ।

ପ୍ରଥମରେ ମେଳ କେଉଁଠି ଦେଖାଯାଉ । ବୁର୍ଜୁୟା ଗଣତାନ୍ତ୍ରିକ ବିପ୍ଳବ ଯୁଗରେ ମୂଳ ରାଜନୈତିକ କାର୍ଯ୍ୟକ୍ରମରେ ଏହି ଦୁଇ ନୀତିର ମେଳ ରହିଛି । ସାନମିନ୍‌ଚୁଆଇର ଜାତୀୟତା, ଗଣତନ୍ତ୍ର ଓ ଜନସାଧାରଣଙ୍କ ଜୀବିକା ଯାହାକୁ ୧୯୨୪ ମସିହାରେ ଡାକ୍ତର ସୁନୟାତସେନ୍ ସଂଶୋଧନ କରିଥିଲେ ତାହା ସହିତ ଚୀନ କମ୍ୟୁନିଷ୍ଟମାନଙ୍କର ଗଣତାନ୍ତ୍ରିକ ବିପ୍ଳବ ଯୁଗର କାର୍ଯ୍ୟକ୍ରମର ମୌଳିକ ଭାବେ ମେଳ ରହିଛି । ଏହି ମେଳ ହେତୁ ଏବଂ ସାନମିନଚୁଆଇକୁ ସଫଳ କରିବା ଲାଗି ଏହି ଦୁଇ ନୀତିର ଓ ଦୁଇ ପାର୍ଟିର ମିଳିତ ସାମ୍ମୁଖ୍ୟ ଗଢ଼ା ଯାଇ ପାରେ । ଏ କଥାକୁ ଅବହେଳା କରିବା ଭ୍ରମାତ୍ମକ ।

ଦ୍ୱିତୀୟରେ ଅମେଳ କେଉଁଠି ରହିଛି ଦେଖାଯାଉ—

(୧) ଗଣତାନ୍ତ୍ରିକ ବିପ୍ଳବ ବେଳେ କାର୍ଯ୍ୟକ୍ରମର କେତେକ ଦଫାରେ ପାର୍ଥକ୍ୟ ରହିଛି । କମ୍ୟୁନିଷ୍ଟମାନଙ୍କ କାର୍ଯ୍ୟକ୍ରମରେ "ଘଣ୍ଟାଶ୍ରମ

ଓ ସଂପୂର୍ଣ୍ଣ କୃଷି ସଂସ୍କାରର କାର୍ଯ୍ୟର ବ୍ୟବସ୍ଥା ଅଛି । ମାତ୍ର ସାନ ମିନ୍‌ଚୁଅଇ ର କାର୍ଯ୍ୟକ୍ରମରେ ଏହା ସ୍ଥାନ ପାଇନାହିଁ । କୋମିନ୍‌ତାଙ୍ଗ୍ ଯଦି ଏ ଅଭାବକୁ ସଂଶୋଧନ ନ କରେ ଏବଂ ସେଗୁଡ଼ିକୁ ହାସଲ କରିବାକୁ ବ୍ୟବସ୍ଥା ନ କରେ ତେବେ ଆମେ କହିବୁ ଯେ ମୌଳିକଭାବେ କାର୍ଯ୍ୟକ୍ରମର ମେଳ ରହିଛି ମାତ୍ର ସଂପୂର୍ଣ୍ଣ ମେଳନାହିଁ ।

( ୨ ) ଦୁଇ ସ୍ତର ଭିତରେ ପାର୍ଥକ୍ୟ ରହିଛି । ଗଣତାନ୍ତ୍ରିକ ସ୍ତର ଛଡ଼ା କମ୍ୟୁନିଜିମରେ ଏକ ସମାଜ ବାଦୀସ୍ତର ରହିଛି । ତେଣୁ ସର୍ବନିମ୍ନ କାର୍ଯ୍ୟକ୍ରମ ଛଡା ଏକ ସର୍ବୋଚ୍ଚ କାର୍ଯ୍ୟକ୍ରମ ଅଛି । ତା ଅର୍ଥ ଏକ ସମାଜବାଦୀ ବ୍ୟବସ୍ଥା ହାସଲ କରିବାକୁ ହେବ । ସାନମିନଚୁଅଇ କେବଳ ଗଣତାନ୍ତ୍ରିକ ବିପ୍ଳବକୁ ହାସଲ କରିବ, ମାତ୍ର ସମାଜବାଦୀ ବିପ୍ଳବ ହାସଲ କରିବ ନାହିଁ । ତେଣୁ ତାହାର କେବଳ ସର୍ବନିମ୍ନ କାର୍ଯ୍ୟକ୍ରମ ରହିଛି । ସର୍ବୋଚ୍ଚ କାର୍ଯ୍ୟକ୍ରମ ଅଥବା ସମାଜବାଦୀ ବ୍ୟବସ୍ଥା ଗଠନ କାର୍ଯ୍ୟକ୍ରମ ତାହାର ନାହିଁ ।

(୩) ବିଶ୍ୱ ଦୃଗ୍ ଦର୍ଶନ ସମ୍ବନ୍ଧରେ ହେଉଛି ତୃତୀୟ ପାର୍ଥକ୍ୟ । କମ୍ୟୁନିଷ୍ଟ ବିଶ୍ୱ ଦୃଗ୍ ଦର୍ଶନ ହେଉଛି ଦ୍ୱନ୍ଦମୂଳକ ବସ୍ତୁବାଦ ଉପରେ ପ୍ରତିଷ୍ଠିତ ମାତ୍ର ସାନ୍‌ମିନ୍‌ଚୁଅଇର ବିଶ୍ୱଦର୍ଶନ ଓ୍ୱିସେଙ୍ଗ୍‌ବାଦ ଉପରେ ପ୍ରତିଷ୍ଠିତ । ଉଭୟ ପରସ୍ପରର ବିରୋଧୀ ।

(୪) ଚତୁର୍ଥ ପାର୍ଥକ୍ୟ ହେଉଛି ବିପ୍ଳବକୁ ସଫଳ କରିବାରେ ନିପୁଣତା କମ୍ୟୁନିଷ୍ଟମାନଙ୍କର ମତ ଓ କାର୍ଯ୍ୟ ଭିତରେ ସାମଞ୍ଜସ୍ୟ

ରହେ । ତା ଅର୍ଥ ବିପ୍ଳବକୁ ସଫଳ କରିବାରେ କମ୍ୟୁନିଷ୍ଟ-ମାନଙ୍କର ନିପୁଣତା ରହିଚି । ମାତ୍ର କୋମିନତାଙ୍ଗରେ ବିପ୍ଳବ ପ୍ରତି ବିଶ୍ୱସ୍ତ କେତେକ ଲୋକଙ୍କୁ ବାଦ୍ ଦେଲେ ନୀତି ଓ କାର୍ଯ୍ୟ ଭିତରେ ଅସାମଞ୍ଜସ୍ୟ ରହିଛି । ଅର୍ଥାତ୍ ସେମାନେ ଯାହା କହନ୍ତି ଓ ଯାହା କରନ୍ତି ତାହା ଭିତରେ ପାର୍ଥକ୍ୟ ରହେ ଓ ବିପ୍ଳବକୁ ସଫଳ କରିବାରେ ନିପୁଣତାର ଅଭାବ ଦେଖାନ୍ତି ।

କମ୍ୟୁନିଷ୍ଟ ଓ କୋମିନତାଙ୍ଗ ସଭ୍ୟମାନଙ୍କ ଭିତରେ ମତପାର୍ଥକ୍ୟ ଘଟିବା ପାଇଁ ପୂର୍ବ ବର୍ଣ୍ଣିତ ଅମେଳ ଦାୟୀ । ଦୁହିଙ୍କ ଭିତରେ ଯେଉଁତକ ମେଳ କେବଳ ତାକୁହିଁ ଦେଖିବା ଓ ଅମେଳକୁ ଅବହେଳା କରିବା ଭୁଲ ହେବ ।

ଏକଥା ହୃଦୟଙ୍ଗମ କରି ପାରିଲେ ବୁର୍ଜୁୟାଙ୍କ ଭିତରେ ଥିବା ଜିଦ୍‌ଖୋର ଲୋକେ ଯେ "କମ୍ୟୁନିଜମ୍‌ର ଗଣ୍ଡିଲ୍‌ବାଦ" ବୋଲି ତାହାଙ୍କ ଦାବୀ କରୁଛନ୍ତି ସେ କଥା ବୁଝିପାରିବୁ । ଏ ଦାବୀର ଅର୍ଥ କ'ଣ ହୋଇ ପାରେ ? ଯଦି ବୁର୍ଜୁୟା ଶ୍ରେଣୀର ଏହା ଏକଛତ୍ରବାଦ ନୁହଁ ବୋଲି କିଏ କହିବ, ତେବେ ତାର ସାଧାରଣ ଜ୍ଞାନ ଅଭାବ ବୋଲି ଜଣାଯିବ ।

—୧୦—

## ନୂଆ ଓ ପୁରୁଣା ସାନ୍‌ମିନ୍‌ଚୁ ଆଇ

ଇତିହାସର ପରିବର୍ତ୍ତନକୁ ବୁର୍ଜୁୟା ଶ୍ରେଣୀର ଜିଦ୍‌ଖୋର ଲୋକେ ବୁଝନ୍ତି ନାହିଁ । ସେମାନଙ୍କ ଜ୍ଞାନର ମାତ୍ରା ଏତେ କମ ଯେ ତାହା "ଶୂନ ପଛକୁ" ବୋଲି କହିବାକୁ ହେବ । ସେମାନେ ସାନମିନ୍‌ଚୁଆଇ ଓ କମ୍ୟୁନିଜମ୍ ଭିତରେ ପ୍ରଭେଦ କ'ଣ ତାହା

ପୁରୁଣା ସାନ୍‌ମିନ୍‌ଚୁଆଇ ଓ ନୂଆ ସାନ୍‌ମିନ୍‌ଚୁଆଇ ଭିତରେ ପ୍ରଭେଦ କ'ଣ ତାହା ଜାଣନ୍ତି ନାହିଁ କି ପୁରୁଣା ସାନ୍‌ମିନ୍‌ଚୁଆଇ ଓ ନୂଆ ସାନ୍‌ମିନ୍‌ ଚୁଆଇ ଭିତରେ ପ୍ରଭେଦ କଅଣ ବୁଝନ୍ତି ନାହିଁ ।

ଆମେ କମ୍ୟୁନିଷ୍ଟମାନେ ସ୍ୱୀକାର କରୁଁ ଯେ ଜାପାନ ବିରୋଧୀ ଜାତୀୟ ମିଳିତ ସାମ୍ମୁଖ୍ୟ ଲାଗି ସାନ୍‌ମିନ୍‌ଚୁଆଇ ହେଉଛି ମୂଳଭିତ୍ତି । "ଚୀନର ବର୍ତ୍ତମାନ ଅବସ୍ଥାରେ ସାନ୍‌ସିନ୍‌ଚୁଆଇର ଆବଶ୍ୟକତା ରହିଛି । ତାହାକୁ ସମ୍ପୂର୍ଣ୍ଣ ଭାବେ ହାସଲ କରିବାକୁ ଆମ ପାର୍ଟି ସଂଗ୍ରାମ କରିବାକୁ ପ୍ରସ୍ତୁତ" ଏବଂ କମ୍ୟୁନିଜିମର ସର୍ବ ନିମ୍ନ କାର୍ଯ୍ୟକ୍ରମ ଓ ସାନ୍‌ମିନ୍‌ଚୁଆଇର ନୀତି ମୌଳିକ ଭାବେ ଏକ । ଯେଉଁ ସାନ୍‌ମିନ୍‌ଚୁଆଇକୁ ଆମେ କମ୍ୟୁନିଷ୍ଟମାନେ ସ୍ୱୀକାର କରୁ, ତାହା କ'ଣ ? ପ୍ରଥମ କୋମିନ୍‌ ଟାଙ୍ଗ କଂଗ୍ରେସରେ ଡ଼ାକ୍ତର ସନୟାତ୍‌ ସେନ ଯେଉଁ ଘୋଷଣା କରିଥିଲେ ସେହି ସଂଶୋଧିତ ସାନ୍‌ମିନ୍‌ ଚୁଆଇକୁ ଆମେ ସ୍ୱୀକାର କରୁ । ମୁଁ ଆଶାକରେ, ଏହି ଜିଦ୍‌ଖୋର ଗୋଷ୍ଠୀରେ ଥିବା ଭଦ୍ରଲୋକମାନେ "କମ୍ୟୁନିଷ୍ଟ ବିରୋଧ" "କମ୍ୟୁନିଷ୍ଟ ବିରୋଧ" ପ୍ରଭୃତି ଲାଗି ଗର୍ବ ସହକାରେ କାମ କରି ଯେତେବେଳେ ଅବସର ନେବେ ସେତେବେଳେ ଏହି ଘୋଷଣାକୁ ପଢ଼ିବେ । ଡ଼ାକ୍ତର ସନୟାତ୍‌ ସେନ ତାଙ୍କ ଘୋଷଣାରେ କହିଥିଲେ "ଏହାହିଁ ସାନ୍‌ମିନ୍‌ଚୁଆଇର ବାସ୍ତବ ବ୍ୟାଖ୍ୟା ।" ଏଥିରୁ ଆମେ ଦେଖିବୁ ଯେ ଯେଉଁ ସାନ୍‌ମିନ୍‌ଚୁଆଇର ବ୍ୟାଖ୍ୟା ଡ଼ାକ୍ତର ସନୟାତ ସେନ କୋମିନ୍‌ଟାଙ୍ଗ୍‌ର ପ୍ରଥମ କଂଗ୍ରେସରେ କରିଥିଲେ ତାହାହିଁ ଖାଣ୍ଟି ସାନ୍‌ମିନ୍‌ଚୁଆଇ ଏବଂ ଅନ୍ୟ ଯେଉଁ ସବୁ ବ୍ୟାଖ୍ୟା କରାଯାଏ ସେ ଗୁଡିକ ମିଥ୍ୟା । ଏହି ଘୋଷଣାରେ ଯେଉଁ ବ୍ୟାଖ୍ୟା କରାଯାଇଛି ତାହାହିଁ ସଠିକ ବ୍ୟାଖ୍ୟା ଓ ଅନ୍ୟାନ୍ୟ ସମସ୍ତ ବ୍ୟାଖ୍ୟା ଭ୍ରମାତ୍ମକ ।

ଏହା କମ୍ୟୁନିଷ୍ଟମାନଙ୍କର "ଆଉ ଏକ ଗୁଜବ" ନୁହେଁ । କାରଣ ଏହି ଘୋଷଣା ଗୃହୀତ ହେଲାବେଳେ ଅନେକ କୋମିନ୍‌ଟାଙ୍ଗ୍ ସଭ୍ୟ ଓ ମୁଁ ଉପସ୍ଥିତ ଥିଲୁ ।

କୋମିନ୍‌ଟାଙ୍ଗ୍ ପ୍ରଥମ କଂଗ୍ରେସର ଏହି ଘୋଷଣା ସାନ୍‌ମିନ୍‌ଚୁଆଇର ଦୁଇ ଐତିହାସିକ ସମୟର ସନ୍ଧିକ୍ଷଣ । ତା ପୂର୍ବରୁ ସାନ୍‌ମିନ୍‌ଚୁଆଇ ପୁରୁଣା ନୀତିର ପର୍ଯ୍ୟାୟଭୁକ୍ତ ଥିଲା । ତା ଅର୍ଥ ପୁରୁଣା ଗଣତନ୍ତ୍ରର ପୁରୁଣା ପୁରୁଣା ଅର୍ଦ୍ଧଔପନିବେଶିକ, ବୁର୍ଜୁୟା ଗଣତାନ୍ତ୍ରିକ ବିପ୍ଳବର ପର୍ଯ୍ୟାୟଭୁକ୍ତ ଥିଲା । ତାହାହିଁ ପୁରୁଣା ସାନ୍‌ମିନ୍‌ଚୁଆଇ ।

ତାହାପରେ ସାନ୍‌ମିନ୍‌ଚୁଆଇ ନୂତନ ନୀତିର ପର୍ଯ୍ୟାୟଭୁକ୍ତ ହେଲା । ଅର୍ଥାତ ନୂତନ ଗଣତନ୍ତ୍ରର ନୂତନ, ଅର୍ଦ୍ଧଔପନିବେଶିକ ବୁର୍ଜୁୟା ଗଣତାନ୍ତ୍ରିକ ବିପ୍ଳବର ପର୍ଯ୍ୟାୟଭୁକ୍ତ ହେଲା । ଏହା ନୂତନ ସାନ୍‌ମିନ୍‌ଚୁଆଇ ! କେବଳ ଏହି ଧରଣର ସାନ୍‌ମିନ୍‌ଚୁଆଇକୁହିଁ ନୂତନ ଯୁଗର ବୈପ୍ଳବିକ ସାନ୍‌ମିନ୍‌ଚୁଆଇ ବୋଲି କୁହାଯିବ । ଏହି ନୂତନ ଯୁଗର ସାନ୍‌ମିନ୍‌ଚୁଆଇ ଏହି ନୂଆ ସାନ୍‌ମିନ୍‌ଚୁଆଇ ବା ଖାଣ୍ଟି ସାନ୍‌ମିନ୍‌ଚୁଆଇରେ ଡାକ୍ତର ସନୟାତ୍ ସେନଙ୍କ ତିନୋଟି ବିପ୍ଳବୀ ନିର୍ଦ୍ଧାରଣ ନିହିତ ଅଛି । ତାହା ହେଉଛି ସୋଭିଏଟ୍ ରୁଷ ସଂଗେ ବନ୍ଧୁତା, କମ୍ୟୁନିଷ୍ଟଙ୍କ ସଙ୍ଗେ ସହଯୋଗ ଓ ଶ୍ରମିକ ଓ କୃଷକମାନଙ୍କର ସ୍ୱାର୍ଥ ସଂରକ୍ଷଣ । ଏହି ତିନୋଟି ନିର୍ଦ୍ଧାରଣ ବିନା ବା ଏଥିରୁ ଗୋଟିକର ଅଭାବରେ ଏହାକୁ ମିଥ୍ୟା ସାନ୍‌ମିନଚୁଆଇ ଅବା ଅପୂର୍ଣ୍ଣ ସାନ୍‌ମିନ୍‌ଚୁଆଇ କୁହାଯିବ ।

ପ୍ରଥମରେ ବିପ୍ଳବୀ ସାନ୍‌ମିନ୍‌ଚୁଆଇ, ନୂଆ ସାନ୍‌ମିନ୍‌ଚୁଆଇ, ଅବା ଖାଣ୍ଟି ସାନ୍‌ମିନ୍‌ଚୁଆଇ ନିଶ୍ଚିତଭାବେ ସୋଭିଏଟ ୟୁନିଅନ

ସଙ୍ଗେ ବନ୍ଧୁତା ବାନ୍ଧିବ । ଆମ ଦେଶର ବହୁତ ଭିତରକୁ ପଶି ଆସିଥିବା ସାମ୍ରାଜ୍ୟବାଦୀ ଶକ୍ତି ବିରୁଦ୍ଧରେ ଆମେ ସଂଗ୍ରାମ କରୁଛେଁ । ସୋଭିଏଟ୍ ରୁଷର ବିନା ସାହାଯ୍ୟରେ ଅନ୍ତିମ ବିଜୟ କଳ୍ପନାର ବାହାରେ । ସୋଭିଏଟ ରୁଷ ସଙ୍ଗେ ବନ୍ଧୁତା ଯଦି ଆମେ ଛାଡ଼ି ଦେଉଁ ଓ ସାମ୍ରାଜ୍ୟବାଦ ସଙ୍ଗେ ସହଯୋଗ କରୁ ତେବେ "ବିପ୍ଳବ" ଶବ୍ଦଟିକୁ ଖାରଜ କରିଦେବାକୁ ହେବ ଏବଂ ସାନମିନଚୁଆଇ ଏକ ପ୍ରତିକ୍ରିୟାଶୀଳ ନୀତିରେ ଗଣା ହେବ । କୌଣସି ନିରପେକ୍ଷ ସାନମିନଚୁଆଇ ନାହିଁ । ତାହା ବିପ୍ଳବୀ ବା ପ୍ରତିକ୍ରିୟାଶୀଳ ସାନମିନ-ଚୁଆଇ ହୋଇପାରେ । ଓ୍ୟାଙ୍ଗ୍ ଚ୍ୟାଙ୍ଗ ଓ୍ୱି କହିଥିଲେ ଯେ "ଦୁଇପକ୍ଷରୁ ଆକ୍ରମଣର ବିରୋଧ କରିବାକୁ ହେବ"—ଏବଂ ଏପରି ସାନମିନଚୁଆଇକୁ କରିବାକୁ ହେବ ଯାହା ଉଭୟ କମ୍ୟୁନିଜ୍ମ ଓ ସାମ୍ରାଜ୍ୟବାଦର ବିରୋଧ କରିବ । ଏ ପରାମର୍ଶ ଅନୁସାରେ କାମକଲେ ବେଶ ଗାରନ୍ଧି ବୁଝାଯିବ । କିନ୍ତୁ ହାୟ ! । ଯିଏ ଏହି କୌଶଳର ପରାମର୍ଶ ଦେଇଥିଲେ ସେହି ବିଶ୍ୱାସଘାତକ ଓ୍ୟାଙ୍ଗ୍ ଚ୍ୟାଙ୍ଗ ଓ୍ୱି ଏ ଧରଣର ସାନମିନଚୁଆଇକୁ ପରିତ୍ୟାଗ କରି (ଗଣ୍ଠିଲି ବାନ୍ଧି) ସାମ୍ରାଜ୍ୟବାଦ ସଙ୍ଗେ ସହଯୋଗ କରିବାର ଏକ କୌଶଳ ଗ୍ରହଣ କରିଛନ୍ତି । ତେଣୁ ବିପ୍ଳବୀ ସାନମିନଚୁଆଇ, ନୂଆ ଅବା ଖାଣ୍ଟି ସାନମିନଚୁଆଇ ହିଁ ସୋଭିଏଟ ୟୁନିଅନ ସଙ୍ଗେ ବନ୍ଧୁତା ବାନ୍ଧିବ । ତାହା ସୋଭିଏଟ ୟୁନିଅନକୁ ବିରୋଧ କରିବାକୁ ସାମ୍ରାଜ୍ୟବାଦ ସଙ୍ଗେ ସହଯୋଗ କରିବ ନାହିଁ ।

ଦ୍ୱିତୀୟରେ—ବିପ୍ଳବୀ ସାନମିନଚୁଆଇ, ନୂଆ ଅଥବା ଖାଣ୍ଟି ସାନମିନଚୁଆଇ ନିଶ୍ଚିତଭାବେ କମ୍ୟୁନିଜମ୍ ସଙ୍ଗେ ସହଯୋଗ କରିବ । ଯଦି ତୁମେ କମ୍ୟୁନିଜମ ସଙ୍ଗେ ସହଯୋଗ

କରିବ ନାହିଁ ତେବେ ତାକୁ ବିରୋଧ କରିବା ଛଡ଼ା ଅନ୍ୟଗତି ନାହିଁ ଏବଂ ଜାପାନୀ ସାମ୍ରାଜ୍ୟବାଦୀ ଓ ଓ୍ୟାଙ୍ଗ୍ ଚ୍ୟାଙ୍ଗ ଓ୍ୱିଙ୍କ ନୀତି ହେଉଛି କମ୍ୟୁନିଜିମ୍‌ର ବିରୋଧ । ସେମାନେ ତୁମକୁ କମ୍ୟୁନିଷ୍ଟ ବିରୋଧୀ ସାଥୀ ଭାବେ ଦେଖି ସେମାନଙ୍କ "କମ୍ୟୁନିଷ୍ଟ ବିରୋଧୀ କମ୍ପାନୀରେ" ଯୋଗ ଦେବାକୁ ନିମନ୍ତ୍ରଣ କରି ପାରନ୍ତି । କିନ୍ତୁ ଏହା ଜଣେ ବିଶ୍ୱାସଘାତକତା ହେବ । ତୁମେ ଯୁକ୍ତି କରିପାର "ଆମେ ଜାପାନକୁ କଣ ଅନୁକରଣ କରିବାକୁ ଯାଉଛୁ ।" ହାସ୍ୟାସ୍ପଦ କଥା । ଯାହା ହେଉନା କାହିଁକି ତୁମେ ଯେତେବେଳେ ଜାପାନକୁ ଅନୁସରଣ କରିବାକୁ ଯାଉଛ, ତୁମେ କମ୍ୟୁନିଷ୍ଟ ବିରୋଧୀ ଥିବାଯାଏ ତୁମେ ବିଶ୍ୱାସଘାତକ ହେବ । କାରଣ ଏହା କରି ତୁମେ ଆଉ ଜାପାନର ପ୍ରତିରୋଧ କରିପାରିବ ନାହିଁ । "ଜାପାନକୁ ସ୍ୱାଧୀନ ଭାବେ ତୁମେ ବିରୋଧ କାହିଁକି ନ କରିବ" ଏ କଥା କହିପାର । ମାତ୍ର ତାହା ଖାଲି ସ୍ୱପ୍ନର କାହାଣୀ ପରି ହେବ । ଔପନିବେଶିକ ଓ ଅର୍ଦ୍ଧଔପନିବେଶିକ" "ବୀରମାନେ" ଏତେବଡ଼ ପ୍ରତିବିପ୍ଳବୀ କାମ କରି କିପରି ସାମ୍ରାଜ୍ୟବାଦୀ ଶକ୍ତିଙ୍କ ଉପରେ ନିର୍ଭର ନକରିବେ ? ଏହା ପୂର୍ବରୁ ଦଶବର୍ଷକାଳ ପ୍ରକୃତରେ ସମସ୍ତ ସାମ୍ରାଜ୍ୟବାଦୀ ଶକ୍ତିଙ୍କ ସାହାଯ୍ୟ ଘେନି ତୁମେ ବୃଥା କମ୍ୟୁନିଷ୍ଟଙ୍କ ବିରୋଧରେ ଲଢ଼ିଥିଲ । ଆଜି କିପରି "ତୁମେ ସ୍ୱାଧୀନ ଭାବରେ" କମ୍ୟୁନିଷ୍ଟଙ୍କ ବିରୋଧରେ ଲଢ଼ିବ ? ବାହାରେ କେତେକ ଲୋକ ନିମ୍ନୋକ୍ତ ଧରଣର କଥା କହିବାର ଖବର ଆମେ ପାଉଛୁ । କମ୍ୟୁନିଷ୍ଟଙ୍କ ବିରୋଧ କରିବା ଭଲ, ମାତ୍ର ଆମେ ପାରି ଉଠିବା ନାହିଁ । ଏଠି ଯାହା କୁହାଗଲା ଯଦି ସତ୍ୟହୁଏ ତାହେଲେ କଥାଟା ଅଧା ଭ୍ରମ । କମ୍ୟୁନିଷ୍ଟଙ୍କ ବିରୋଧ କରିବାରେ "ଭଲ" କଣ ? ମାତ୍ର ଅନ୍ୟ ଅର୍ଦ୍ଧେକ ଠିକ୍ କାରଣ କୌଣସି କମ୍ୟୁନିଷ୍ଟ ବିରୋଧୀ

ଅଭିଯାନ ସଫଳ ହେବ ନାହିଁ । କାରଣ କଣ ? ସେ କାରଣ ଲୋକଙ୍କ ଠାରେ ରହିଛି । ଲୋକେ କମ୍ୟୁନିଷ୍ଟମାନଙ୍କୁ ସୁଖପାଆନ୍ତି । ଲୋକେ ସେମାନଙ୍କର ବିରୋଧ କରିବାକୁ ଇଚ୍ଛା କରନ୍ତି ନାହିଁ । ତେଣୁ କମ୍ୟୁନିଷ୍ଟ ବିରୋଧୀଙ୍କୁ ଲୋକେ କେବେହେଁ କ୍ଷମା ଦେବେ ନାହିଁ । ଯେତେବେଳେ ଜାତିର ଶତ୍ରୁ ଦେଶ ଭିତରକୁ ଗଭୀର ଭାବେ ପ୍ରବେଶ କରୁଛି ସେତେବେଳେ ତୁମେ କମ୍ୟୁନିଷ୍ଟଙ୍କ ବିରୋଧରେ ଲଢ଼ିଲେ ଲୋକେ ତୁମ ଜୀବନ ରଖେଇ ଦେବେ ନାହିଁ । ଏହା ଧ୍ରୁବ ସତ୍ୟ । ଯିଏ କମ୍ୟୁନିଷ୍ଟଙ୍କ ବିରୋଧରେ ଯିବାଲାଗି ପ୍ରସ୍ତୁତ ହେବ ସେ ମଧ୍ୟ ନିପାତ ହୋଇଯିବାକୁ ପ୍ରସ୍ତୁତ ହେବା ଦରକାର । ସେମାନେ ଯଦି ଏଥିଲାଗି ପ୍ରସ୍ତୁତ ନୁହଁନ୍ତି, ତେବେ ବିଳମ୍ବ ହେବା ପୂର୍ବରୁ ସେମାନେ ନିଜ ହାତ ସେଥିରୁ କାଢ଼ିଆଣିବା ଦରକାର । କମ୍ୟୁନିଷ୍ଟବିରୋଧୀ ବୀରମାନଙ୍କୁ ମୋର ଏହା ହାର୍ଦ୍ଦିକ ଉପଦେଶ । ଏହାପରେ ଏହା ଜଳ ଜଳ ସତ ଯେ ଆଜିକାର ସାନ୍‌ମିନ୍‌ଚୁଆଇ କମ୍ୟୁନିଷ୍ଟଙ୍କ ସଂଗେ ସହଯୋଗ କରିବ ନଚେତ ତାହା ଲୁପ୍ତ ହୋଇ ପଡ଼ିବ । ସାନ୍‌ମିନ୍‌ଚୁଆଇ ଲାଗି ଏହା ଜୀବନମରଣର ପ୍ରଶ୍ନ । କମ୍ୟୁନିଷ୍ଟ ସହିତ ସହଯୋଗ କଲେଯାଏ ଏହା ବଞ୍ଚି ରହିବ, ବିରୋଧ କଲା ମୁହୂର୍ତ୍ତରୁ ଏହା ଶେଷ ପାଇଯିବ । କିଏ ପ୍ରମାଣ କରିବ ଯେ ଏକଥା ଠିକନୁହେଁ ?

ତୃତୀୟରେ ବିପ୍ଳବୀ ସାନ୍‌ମିନ୍‌ଚୁଆଇ, ନୂଆ ଅବା ଖାଣ୍ଟି ସାନ୍‌ମିନ୍‌ଚୁଆଇ ନିଶ୍ଚୟ କୃଷକ ଓ ଶ୍ରମିକଙ୍କ ସ୍ୱାର୍ଥ ବଜାୟ ରଖିବ । ଯେଉଁମାନେ କୃଷକ ଓ ଶ୍ରମିକଙ୍କ ସ୍ୱାର୍ଥ ରକ୍ଷା କରିବା ନୀତି ବିରୁଦ୍ଧରେ ଯିବେ କିମ୍ବା ଡାକ୍ତର ସନୟାତ୍‌ସେନ୍‌ଙ୍କ ଶେଷ ଦଲିଲରେ ଲେଖାଥିବା "ଜନତାର ଜାଗରଣ"ର ସଫଳତା

ବିରୁଦ୍ଧରେ ଯିବେ, ସେମାନେ ବିପ୍ଳବର ଓ ସେମାନଙ୍କ ନିଜର ପରାଜୟକୁ ଡ଼ାକିଆଣିବେ । ଷ୍ଟାଲିନ୍ କହିଥିଲେ "ଉପନିବେଶ ଓ ଅର୍ଦ୍ଧ ଉପନିବେଶର ପ୍ରଶ୍ନ କୃଷକସମସ୍ୟାର ନିର୍ଯ୍ୟାସ ।" ତା ଅର୍ଥ ଚୀନର ବିପ୍ଳବ ହେଉଛି କୃଷକଙ୍କ ବିପ୍ଳବ । ଜାପାନ ବିରୁଦ୍ଧରେ ବର୍ତ୍ତମାନର ପ୍ରତିରୋଧ ମୂଳକ ଯୁଦ୍ଧ ମୁଖ୍ୟତଃ କୃଷକଙ୍କ ପ୍ରତିରୋଧ । ନୂତନ ଗଣତନ୍ତ୍ରର ରାଜନୀତି ମୁଖ୍ୟତଃ କୃଷକଙ୍କୁହିଁ ଶକ୍ତିସମ୍ପନ୍ନ କରାଇବ । ନୂଆ ଅବା ଖାଣ୍ଟି ସାନ୍‌ମିନ୍‌ଚୁଆଇ ମୁଖ୍ୟତଃ କୃଷକ-ମାନଙ୍କର ବିପ୍ଳବୀ ନୀତି । ଜନପ୍ରିୟ ସଂସ୍କୃତିର ବିଷୟବସ୍ତୁ ମୁଖ୍ୟତଃ କୃଷକମାନଙ୍କ ସଂସ୍କୃତିର ଉନ୍ନତି ବିଧାନ । ଆମେ ଯେ "ପାହାଡ଼ ଉପରକୁ ଯାଇ" ଏକାଠି ହେଉ, କାମକରୁ, ଗବେଷଣାକରୁ, ବହି ପତ୍ର ଛାପୁ, ଲେଖାଲେଖି କରୁ ଓ ସେ ପାହାଡ଼ିଆ ଅଞ୍ଚଳରେ ଖେଳୁ ବୁଲୁ ତାହା ମୁଖ୍ୟତଃ କୃଷକମାନଙ୍କ ପାଇଁହିଁ କରୁ । ପରିଶେଷରେ ଜାପାନକୁ ବିରୋଧ କରିବାରେ ଯେଉଁ ସରଞ୍ଜାମ ପାଉ ଓ ଆମ ବଞ୍ଚିବା ଲାଗି ଯେଉଁ ଖାଦ୍ୟସାମଗ୍ରୀ ପାଉ ସେ ସବୁ ମୁଖ୍ୟତଃ କୃଷକଶ୍ରେଣୀହିଁ ଯୋଗାଇଥାଏ । ଆମେ "ମୁଖ୍ୟତଃ" ବୋଲି ଯାହାକୁ କହୁଚୁ ତାହାର ଅର୍ଥ ହେବ "ମୌଳିକଭାବେ" । କାରଣ ଆମେ ଅନ୍ୟମାନଙ୍କୁ ଏଥିରେ ଅବହେଳା କରୁନାହୁଁ । ଷ୍ଟାଲିନ୍ ନିଜେ ଏ କଥାର ବ୍ୟାଖ୍ୟା କରିଛନ୍ତି । ଜଣେ ପ୍ରାଇମେରି ସ୍କୁଲ୍ ଛାତ୍ରର ଏହା ସାଧାରଣ ଜ୍ଞାନ ଯେ ଚୀନର ଶତକଡ଼ା ୮୦ଭାଗ ଲୋକେ କୃଷକ । ବଡ଼ ବଡ଼ ସହରର ପତନ ପରେ ଏ ଅନୁପାତ ଆହୁରି ବଢ଼ିଯାଇଥିବ । ତେଣୁ କୃଷକର ସମସ୍ୟା ଚୀନ ବିପ୍ଳବର ମୌଳିକ ସମସ୍ୟା ଏବଂ ଚୀନ ବିପ୍ଳବର ମୁଖ୍ୟଶକ୍ତି ହେଉଛନ୍ତି କୃଷକଶକ୍ତି । କୃଷକ ପରେ ଚୀନ ଜନସାଧାରଣଙ୍କ ଭିତରେ ଶ୍ରମିକଶ୍ରେଣୀର ଦ୍ୱିତୀୟ ସ୍ଥାନ । ଚୀନରେ ଲକ୍ଷ ଲକ୍ଷ ଶିଳ୍ପ, ଶ୍ରମିକ,

କୋଟି କୋଟି ହସ୍ତଶିଳ୍ପ ଶ୍ରମିକ ଓ ଖେତ ମଜୁରିଆ ଅଛନ୍ତି । ସେମାନଙ୍କ ବ୍ୟତିରେକେ ଚୀନ ରହିପାରେ ନା । କାରଣ ସେମାନେ ଶିଳ୍ପ ଅର୍ଥନୀତିର ଉତ୍ପାଦନକାରୀ । ଚୀନର ବିପ୍ଳବ ସେମାନଙ୍କୁ ବାଦ୍ ଦେଇ ଜୟଯୁକ୍ତ ହୋଇପାରେ ନା । କାରଣ ସେମାନେ ବିପ୍ଳବର ନେତା ଏବଂ ସେମାନେ ଖୁବ୍ ବିପ୍ଳବୀ । ଏହି ହେତୁ ବିପ୍ଳବୀ ସାନ୍‌ମିନ୍‌ଚୁଆଇ, ନୂଆ ଅବା ଖାଣ୍ଟି ସାନ୍‌ମିନ୍‌ଚୁଆଇର ଏପରି ନୀତି ହେବା ଉଚିତ ଯାହା ଶ୍ରମିକ ଓ କୃଷକଙ୍କ ସ୍ୱାର୍ଥରକ୍ଷା କରିବ ଓ ସେମାନଙ୍କୁ ସାହାଯ୍ୟ କରିବ । କୌଣସି ସାନ୍‌ମିନ୍‌ଚୁଆଇ ଯଦି ଏହି ନୀତି ଗ୍ରହଣ ନ କରେ ଯଦି ବାସ୍ତବରେ ଶ୍ରମିକ ଓ କୃଷକଙ୍କୁ ସାହାଯ୍ୟ କରି ସେମାନଙ୍କ ସ୍ୱାର୍ଥ ରକ୍ଷା ନ କରେ, "ଜନସାଧାରଣଙ୍କ ଜାଗରଣ"କୁ ସଫଳ ନ କରେ ତେବେ ତାକୁ ଲୋପ କରିଦେବା ଉଚିତ ।

ଏହିଥିରୁ ଜଣାଯିବ ଯେ ସୋଭିଏଟ୍ ୟୁନିଅନ ସଙ୍ଗେ ବନ୍ଧୁତା ବାନ୍ଧିବା, କମ୍ୟୁନିଷ୍ଟଙ୍କ ସଙ୍ଗେ ସହଯୋଗ କରିବା ଏବଂ କୃଷକ ଓ ଶ୍ରମିକମାନଙ୍କର ସ୍ୱାର୍ଥ ରକ୍ଷା କରିବା ଏହି ତିନୋଟି ବିପ୍ଳବୀ ନୀତି ବ୍ୟତିରେକେ ସାନ୍‌ମିନ୍‌ଚୁଆଇର ଉଜ୍ଜ୍ୱଳ ଭବିଷ୍ୟତ୍ ନାହିଁ । ସାନମିନଚୁଆଇର ଶିଷ୍ୟମାନେ, ଯେଉଁମାନଙ୍କର ଏବେବି ହୃଦୟରେ ବିବେକ ଅଛି; ସେମାନେ ପ୍ରକୃତରେ ଓ ଗମ୍ଭୀରଭାବେ ଏକଥାକୁ ଚିନ୍ତା କରିବା ଆବଶ୍ୟକ ।

ତିନୋଟି ବିପ୍ଳବୀ ନୀତି ସମ୍ବଳିତ ଏହି ସାନ୍‌ମିନ୍‌ଚୁଆଇ, ଏହି ବିପ୍ଳବୀ ସାନ୍‌ମିନ୍‌ଚୁଆଇ, ବା ନୂଆ କିମ୍ବା ଖାଣ୍ଟି ସାନ୍‌ମିନ୍‌ଚୁଆଇ ହେଉଛି ନୂଆ ଗଣତନ୍ତ୍ରର ସାନ୍‌ମିନ୍‌ଚୁଆଇ— ପୁରୁଣା ସାନ୍‌ମିନ୍‌ଚୁଆଇର ବିକାଶ । ଏହା ଡାକ୍ତର ସନୟାଟ୍-

ସେନଙ୍କ ଏକ ବରିଷ୍ଠ ଅବଦାନ । ଚୀନର ବିପ୍ଳବ ଯେଉଁ ସମୟରେ ବିଶ୍ୱ-ସମାଜବାଦୀ ବିପ୍ଳବର ଅଙ୍ଗ ସେତିକିବେଳରେ ଏହି ପ୍ରକାର ସାନ୍ ମିନ୍ ଚୁଆଇର ଉଦ୍ଭବ । କେବଳ ଏହି ପ୍ରକାର ସାନ ମିନ୍-ଚୁଆଇକୁହିଁ କମ୍ୟୁନିଷ୍ଟମାନେ "ଚୀନର ବର୍ତ୍ତମାନ ଆବଶ୍ୟକତା" ବୋଲି ବିଚାରନ୍ତି ଏବଂ "ତାକୁ ସମ୍ପୂର୍ଣ୍ଣ ହାସଲ କରିବାଲାଗି ସଂଗ୍ରାମ କରିବାକୁ ଇଚ୍ଛୁକ" ବୋଲି ଘୋଷଣା କରନ୍ତି । କେବଳ ଏହି ପ୍ରକାର ସାନ୍ ମିନ୍ ଚୁଆଇହିଁ କମ୍ୟୁନିଷ୍ଟମାନଙ୍କର ସର୍ବନିମ୍ନ କାର୍ଯ୍ୟ-କ୍ରମ ସଙ୍ଗେ ଅର୍ଥାତ୍ ଗଣତନ୍ତ୍ର ସ୍ତରରେ କମ୍ୟୁନିଷ୍ଟମାନଙ୍କ ରାଜନୈତିକ କାର୍ଯ୍ୟକ୍ରମ ସଙ୍ଗେ ମୌଳିକଭାବେ ସମାନ ।

ପୁରୁଣା ସାନ୍ ମିନ୍ ଚୁଆଇ ହେଉଛି ପୁରୁଣା ସମୟର ଚୀନ ବିପ୍ଳବରୁ ଉଦ୍ଭବ । ସେତେବେଳେ ରୁଷ ଏକ ସାମ୍ରାଜ୍ୟବାଦୀ ରାଷ୍ଟ୍ରଥିଲା । ତେଣୁ ପୁରୁଣା ସାନ୍ ମିନ୍ ଚୁଆଇଁ ରୁଷ ସଙ୍ଗେ ବନ୍ଧୁତା ବାନ୍ଧିବା ନୀତି ରଖିପାରନ୍ତା ନାହିଁ । ସେତେବେଳେ ଚୀନରେ କମ୍ୟୁନିଷ୍ଟ ପାର୍ଟି ନଥିଲା । ତେଣୁ କମ୍ୟୁନିଷ୍ଟମାନଙ୍କ ସହିତ ସହଯୋଗ କରିବା ନୀତି ତାହା ରଖି ପାରନ୍ତା ନାହିଁ । ତାହା ଛଡ଼ା ଶ୍ରମିକ ଓ କୃଷକମାନଙ୍କର ଆନ୍ଦୋଳନ ସେତେବେଳେ ନିଜର ରାଜନୈତିକ ଗୁରୁତ୍ୱକୁ ପୂର୍ଣ୍ଣଭାବରେ ପ୍ରକାଶ କରି ନଥିଲା ଏବଂ ଲୋକେ ତାକୁ ବିଚାରକୁ ଆଣି ନଥିଲେ । ତେଣୁ କୃଷକ ଓ ଶ୍ରମିକମାନଙ୍କୁ ସାହାଯ୍ୟ କରି ସେମାନଙ୍କ ସ୍ୱାର୍ଥ ରକ୍ଷା କରିବା ନୀତି ରଖି ପାରି ନଥାନ୍ତା । ତେଣୁ ୧୯୨୪ରେ କୋମିନ୍ ଟାଙ୍ଗର ପୁନର୍ଗଠନ ପୂର୍ବରୁ ଥିବା ସାନ ମିନ୍ ଚୁଆଇ ପୁରୁଣା ପର୍ଯ୍ୟାୟର ଥିଲା, ଏବଂ ଆଜ ତାହା ଅଚଳ ହୋଇଯାଇଛି । ଯଦି ଆଜ ତାକୁ ନୂଆ ସାନମିନଚୁଆଇରେ ପରିଣତ କରାନଯାଏ ତେବେ

କୋମିନ୍‌ଟାଙ୍ଗ୍ ଆଉ ପାଦେ ହେଲେ ଅଗେଇ ପାରିବ ନାହିଁ ।
ବିଜ୍ଞ ଡାକ୍ତର ସନୟାତ୍‌ସେନ ଏକଥା ଦେଖି ପାରିଥିଲେ ଓ ଲେନିନ୍
ଓ ଚୀନ କମ୍ୟୁନିଷ୍ଟପାର୍ଟିର ସାହାଯ୍ୟରେ ତାଙ୍କ ନୀତିକୁ ସଂଶୋଧନ
କରିଥିଲେ । ସେ ତାକୁ ନୂଆ ଐତିହାସିକ ବୈଶିଷ୍ଟ୍ୟରେ ପରିପୂର୍ଣ୍ଣ
କରି ସାନ୍‌ମିନ୍‌ଚୁଆଇ ଓ କମ୍ୟୁନିଜମ୍‌ର ମିଳିତ ସାମ୍ମୁଖ୍ୟ ଗଢିଲେ;
କୋମିନ୍‌ଟାଙ୍ଗ ଓ କମ୍ୟୁନିଷ୍ଟଙ୍କର ସହଯୋଗ ସ୍ଥାପନ କଲେ;
ଜନସାଧାରଣଙ୍କର ସହାନୁଭୂତି ଅର୍ଜନ କଲେ; ଓ ପ୍ରଥମ ମହାନ୍
ବିପ୍ଳବକୁ ଅଗେଇ ନେଇଗଲେ ।

ପୁରୁଣା ସମୟରେ ପୁରୁଣା ସାନମିନ୍‌ଚୁଆଇ ବିପ୍ଳବୀ
ଥିଲା । ସେହି ସମୟରେ ଐତିହାସିକ ବୈଶିଷ୍ଟ୍ୟକୁ ତାହା ପ୍ରକାଶ
କରୁଥିଲା । ଯଦି କେହି ନୂଆ ସମୟର; ନୂଆ ସାନ୍‌ମିନ୍‌ଚୁଆଇ
ଜନ୍ମ ନେଇଥିଲାବେଳେ ପୁରୁଣା ନୀତିକୁ ଜାବୁଡ଼ି ଧରେ; ସମାଜ-
ବାଦୀ ରାଷ୍ଟ୍ର ପ୍ରତିଷ୍ଠିତ ହେଲାବେଳେ ଯଦି କେହି ରୁଷ ସଙ୍ଗେ
ବନ୍ଧୁତାର ବିରୋଧ କରେ; କମ୍ୟୁନିଷ୍ଟପାର୍ଟି ଜନ୍ମ ନେଲାପରେ
କେହି ଯଦି କମ୍ୟୁନିଷ୍ଟ-କୋମିନଟାଙ୍ଗ୍ ସହଯୋଗକୁ ବିରୋଧ
କରେ; ଖଟିଖିଆ ଜନସାଧାରଣ ଜାଗ୍ରତ ହୋଇ ସେମାନଙ୍କ ବିରାଟ
ରାଜନୈତିକ ଶକ୍ତିର ପରୀକ୍ଷା ଦେଲା ପରେ ଯଦି କେହି କୃଷକ-
ଶ୍ରମିକ ନୀତିର ବିରୋଧ କରେ; ତାକୁ ନିଶ୍ଚିତ ଭାବେ ପ୍ରତିବିପ୍ଳବୀ
ବୋଲି କହିବାକୁ ହେବ । ତାହାର ବିଚାରଶକ୍ତି ନାହିଁ ବୋଲି
ବୁଝିବାକୁ ହେବ । ୧୯୨୭ର ପ୍ରତିକ୍ରିୟା ଏହି ବିଚାରଶକ୍ତି ଅଭାବର
ଫଳ । ଗୋଟିଏ କଥା ଅଛି "ଯେଉଁମାନଙ୍କର ବିଚାରଶକ୍ତି ଅଛି
ସେମାନେ ବିଜ୍ଞ ଲୋକ ।" ମୋର ଆଶା ସାନ୍‌ମିନଚୁଆଇର
ଭକ୍ତମାନେ ଆଜି ଏହା ସ୍ମରଣ କରିବେ ।

ପୁରୁଣା ସାନ୍‌ମିନ୍‌ଚୁଆଇ ଓ କମ୍ୟୁନିଷ୍ଟଙ୍କ ସର୍ବନିମ୍ନ କାର୍ଯ୍ୟକ୍ରମ ଭିତରେ ଆଦୌ ମୌଳିକ ସାଦୃଶ୍ୟ ନାହିଁ । କାରଣ ସେ ପ୍ରକାର ସାନ୍‌ମିନ୍‌ଚୁଆଇ ପୁରୁଣାକାଳର, ଆଜି ଅଚଳ । ଯଦି କୌଣସି ସାନ୍‌ମିନ୍‌ଚୁଆଇ ସୋଭିଏଟ୍ ୟୁନିଅନ କମ୍ୟୁନିଷ୍ଟ ଏବଂ କୃଷକ ଓ ଶ୍ରମିକଙ୍କ ବିରୋଧ କରେ ତେବେ ତାହା ପ୍ରତିକ୍ରିୟାଶୀଳ ସାନ୍‌ମିନ୍‌ଚୁଆଇ । କମ୍ୟୁନିଷ୍ଟମାନଙ୍କ ସର୍ବନିମ୍ନ କାର୍ଯ୍ୟକ୍ରମ ସଙ୍ଗେ ତ ଏହାର ମେଳ ନାହିଁ, ବରଂ ଏହା କମ୍ୟୁନିଷ୍ଟଙ୍କ ସର୍ବନିମ୍ନ କାର୍ଯ୍ୟକ୍ରମର ଶତ୍ରୁ । ଦୁହିଁଙ୍କର ମିଳାମିଶା ବିଚାର କରାଯାଇ ନ ପାରେ । ଏକଥା ମଧ୍ୟ ସାନ୍‌ମିନ୍‌ଚୁଆଇ ର ଭକ୍ତମାନେ ସ୍ମରଣ କରିବା ଉଚିତ ।

ଯାହାହେଉ ସାମ୍ରାଜ୍ୟବାଦ ବିରୋଧୀ ଓ ସାମନ୍ତବାଦ ବିରୋଧୀ କର୍ତ୍ତବ୍ୟ ପୂରଣ ନହେବା ଯାଏ ବିବେକୀ ଲୋକେ କେବେହେଁ ନୂଆ ସାନ୍‌ମିନଚୁଆଇକୁ ଛାଡିବେ ନାହିଁ । କେବଳ ଓ୍ୟାଙ୍ଗ୍ ଚେଙ୍ଗ୍ ଓ୍ୱିଙ୍କ ଭଳି ଲୋକେହିଁ ଏହାକୁ ଛାଡ଼ିବେ । ଓ୍ୟାଙ୍ଗ୍ ଚ୍ୟାଙ୍ଗ୍ ଓ୍ୱି, ଲିଚଙ୍ଗ୍ ଓ୍ୱି ଅବା ଚିଙ୍ଗ୍ ଓ୍ୱି ଯେତେ କର୍କଶ ହୁଅନ୍ତୁ ନା କାହିଁକି ଏବଂ ସେମାନେ ଯେତେ ମିଥ୍ୟାପୂର୍ଣ୍ଣ ସୋଭିଏଟ୍ ବିରୋଧୀ, କମ୍ୟୁନିଷ୍ଟବିରୋଧୀ ସାନ୍‌ମିନଚୁଆଇ ପ୍ରଚାର କରନ୍ତୁ ପଛକେ, ଯେଉଁମାନଙ୍କ ବିବେକ ଅଛି ଓ ନ୍ୟାୟପ୍ରତି ହୃଦୟରେ ସମ୍ମାନ ରହିଛି, ସେମାନେ ଡ଼ାକ୍ତର ସନ୍‌ୟାତ୍‌ଙ୍କର ଖାଣ୍ଟି ନୀତିକୁ ସମର୍ଥନ କରିବେ ହିଁ କରିବେ । ୧୯୨୭ର ପ୍ରତିକ୍ରିୟାପରେ ଚୀନ ବିପ୍ଳବକୁ ଆଗେଇ ନେବାକୁ ସାନ୍‌ମିନ୍‌ଚୁଆଇର ଯଦି ଅନେକ ଶିଷ୍ୟ ଥିଲେ ତେବେ ଶତ୍ରୁ ଆମ ଦେଶ ଭିତରେ ପ୍ରବେଶ କଲାବେଳେ ଯେ ଆହୁରି ଅଧିକ ଶିଷ୍ୟ ରହିବାର କଥା ଏହା ଅଳ୍ପ

ବହୁତ ସତ । ଆମେ କମ୍ୟୁନିଷ୍ଟମାନେ ସାନ୍ ମିନ୍ ଚୁ ଆଇର ଖାଣ୍ଟି ଶିଷ୍ୟମାନଙ୍କ ସଙ୍ଗେ ବହୁଦିନ ଧରି ସହଯୋଗ କରିବୁ । ନିଛକ କମ୍ୟୁନିଷ୍ଟବିରୋଧୀ କିମ୍ବା ବିଶ୍ୱାସଘାତକ ନ ହୋଇଥିଲେ ଆମେ କୌଣସି ବନ୍ଧୁଙ୍କୁ ପରିତ୍ୟାଗ କରିବୁ ନାହିଁ ।

---

—ଏଗାର—

## ନୂଆ ଗଣତନ୍ତ୍ରର ସଂସ୍କୃତି

ନୂଆ ସମୟରେ ଚୀନରାଜନୀତିର ଐତିହାସିକ ବୈଶିଷ୍ଟ୍ୟ ଓ ନୂତନ ଗଣତାନ୍ତ୍ରିକ ଜନତନ୍ତ୍ରର ପ୍ରଶ୍ନ ସମ୍ବନ୍ଧରେ ଆମେ ଉପରେ ଆଲୋଚନା କଲେ । ନିମ୍ନରେ ଆମେ ଚୀନର ସଂସ୍କୃତିକ ପ୍ରଶ୍ନ ସମ୍ବନ୍ଧରେ ଆଲୋଚନା କରିବା ।

କୌଣସି ଏକ ସଂସ୍କୃତି ଏକ ନିର୍ଦ୍ଦିଷ୍ଟ ସମାଜର ରାଜନୀତି ଓ ଅର୍ଥନୀତିର ପ୍ରତିଫଳନ । ଚୀନର ସାମ୍ରାଜ୍ୟବାଦୀ ସଂସ୍କୃତି, ଚୀନର ରାଜନୀତି ଓ ଅର୍ଥନୀତି ଉପରେ ସାମ୍ରାଜ୍ୟବାଦୀ କର୍ତ୍ତୃତ୍ୱ ବା ଆଂଶିକ କର୍ତ୍ତୃତ୍ୱର ପ୍ରତିଫଳନ । ସାମ୍ରାଜ୍ୟବାଦୀଙ୍କ ଦ୍ୱାରା ପରିଚାଳିତ ସଂସ୍କୃତିକ ଅନୁଷ୍ଠାନ କେବଳ ଏହି ସଂସ୍କୃତିକୁ ପ୍ରଚାର କରନ୍ତି ନାହାନ୍ତି, ଥୋକେ ନିର୍ଲଜ୍ଜ ଲୋକ ମଧ୍ୟ ପ୍ରସାର କରାଉଛନ୍ତି । "ଦାସ ଆଦର୍ଶ" ଭାବାପନ୍ନ ସମସ୍ତ ସଂସ୍କୃତି ଏହାର ଅନ୍ତର୍ଗତ । ପୁଣି ଚୀନରେ ଅର୍ଦ୍ଧ ସାମନ୍ତବାଦୀ ସଂସ୍କୃତି ରହିଛି । ତାହା ଦେଶର ଅର୍ଦ୍ଧ ଉପନିବେଶ ରାଜନୀତି ଓ ଅର୍ଥନୀତିକୁ ପ୍ରତିବିମ୍ବିତ କରୁଛି । ଯେଉଁମାନେ ନୂଆ ସଂସ୍କୃତି ଓ ନୂଆ ଚିନ୍ତା ବିରୁଦ୍ଧରେ କନ୍ଫୁସିଅସ୍ଙ୍କ ପୂଜା,ଲର୍ଣ୍ଣି

ଡାକର୍ ଦଅନ୍ତି, ପୁରାଣଶାସ୍ତ୍ରର ଗବେଷଣା କରିବା ଲାଗି କହନ୍ତି; ପୁରୁଣା ରାଜନୀତି ଓ ଭାବର ପ୍ରଚଳନ କରାନ୍ତି; ସେମାନେ ଏହି ସଂସ୍କୃତିର ପ୍ରତିନିଧି । ସାମ୍ରାଜ୍ୟବାଦୀ ଓ ଅର୍ଦ୍ଧ ସାମନ୍ତବାଦୀ ସଂସ୍କୃତି ଦୁହେଁ ଅନ୍ତରଙ୍ଗ ବନ୍ଧୁ । ନୂଆ ସଂସ୍କୃତିରେ ବିରୋଧ କରିବା ସାମ୍ରାଜ୍ୟବାଦୀ ଓ ସାମନ୍ତବାଦୀ ଶ୍ରେଣୀ ସ୍ୱାର୍ଥକୁ ସେବା କରିବା ଲାଗି ସେମାନେ ପ୍ରତିକ୍ରିୟାଶୀଳ ସଂସ୍କୃତି ଗୁଡ଼ିକର ମେଣ୍ଟ ଗଢ଼ିଛନ୍ତି । ତେଣୁ ସେଗୁଡ଼ିକୁ ଫିଙ୍ଗି ଦେବାର କୌଣସି ପ୍ରଶ୍ନ ଉଠିନପାରେ । ପ୍ରତିକ୍ରିୟାଶୀଳ ସଂସ୍କୃତିକୁ ଫିଙ୍ଗି ନ ଦେଲେ ନୂଆ ସଂସ୍କୃତି ପ୍ରତିଷ୍ଠିତ ହୋଇ ପାରିବ ନାହିଁ । ଗୋଟିଏ ଜିନଷକୁ ବନ୍ଦ ନ କଲେ ବା ଦମନ ନ କଲେ ଅନ୍ୟଟି ପ୍ରତିଷ୍ଠିତ ହୋଇ ପାରିବ ନାହିଁ କି ବଢ଼ି ପାରିବ ନାହିଁ । ଏ ଦୁହିଁଙ୍କ ଭିତରେ ସଂଗ୍ରାମ ଏକ ଜୀବନ ଓ ମରଣର ସଂଗ୍ରାମ ।

ନୂଆ ସଂସ୍କୃତି ହେଉଛି ନୂଆ ରାଜନୀତି ଓ ନୂଆ ଅର୍ଥନୀତିର ଆଦର୍ଶଗତ ପ୍ରତିଫଳନ ଏବଂ ଏହା ନୂଆସଂସ୍କୃତି ଓ ନୂଆ ଅର୍ଥନୀତିକୁ ସାହାଯ୍ୟ କରେ ।

ଆମେ ତୃତୀୟ ଅଧ୍ୟାୟରେ ଦେଖାଇଛୁ ଯେ ଚୀନରେ ପୁଂଜିବାଦୀ ଅର୍ଥନୀତି ପ୍ରବେଶ କରିବା ଫଳରେ ଚୀନ ସମାଜର କ୍ରମେ ଚରିତ୍ରର ପରିବର୍ତ୍ତନ ଘଟିଛି । ଏହା ଅଉ ଖାଣ୍ଟି ସାମନ୍ତବାଦୀ ସମାଜ ନହୋଇ ଅର୍ଦ୍ଧସାମନ୍ତବାଦୀ ସମାଜରେ ପରିଣତ ହୋଇଛି । ତୁଳନାରେ ପୁଂଜିବାଦୀ ଅର୍ଥନୀତି ଅବଶ୍ୟ ଏଥିରେ ସାମନ୍ତବାଦୀ ଅର୍ଥନୀତିର କର୍ତ୍ତୃତ୍ୱ ବଜାୟ ରହିଛି । ସାମନ୍ତବାଦୀ ଅର୍ଥନୀତି । ଏକ ନୂଆ ପ୍ରକାରର ଅର୍ଥନୀତି । ଏହା ସଂଗେ ସଂଗେ ଏକ ନୂଆ ରାଜନୈତିକ କ୍ଷେତ୍ରର ଉଦ୍ଭବ ଓ ବୃଦ୍ଧି ହେଲା । ବୁର୍ଜୁୟା,

ପେଟିବୁର୍ଜୁୟା ଓ ସର୍ବହରା ହେଉଛନ୍ତି ଏହି ରାଜନୈତିକ ଶକ୍ତି ଜାଗ୍ରତ ହେଉଥିବା ବୁର୍ଜୁୟା, ପେଟିବୁର୍ଜୁଆ ଓ ସର୍ବହରାର ରାଜନୈତିକ ପ୍ରତିନିଧି ଭାବେ ବିଭିନ୍ନ ବିପ୍ଳବୀ ଦଳର ଉଦ୍ଭବ ହେଲା । କୋମିନ୍‌ତାଙ୍ଗ ଓ କମ୍ୟୁନିଷ୍ଟ ପାର୍ଟି ଉକ୍ତ ଦଳମାନଙ୍କ ଭିତରେ ପ୍ରଧାନ । ନୂଆ ସଂସ୍କୃତି ଏହି ନୂଆ ରାଜନୈତିକ ଓ ଅର୍ଥନୈତିକ ଶକ୍ତିର ପ୍ରତିଫଳନ ଓ ସେମାନଙ୍କ ସେବା କରେ । ପୁଞ୍ଜିବାଦୀ ଅର୍ଥନୀତି ବ୍ୟତିରେକେ ଏବଂ ବୁର୍ଜୁୟା ଓ ସର୍ବହରା ଶ୍ରେଣୀର ଅସ୍ତିତ୍ୱ ବିନା ଏବଂ ଏହି ଶ୍ରେଣୀମାନଙ୍କର ରାଜନୈତିକ ଦଳଛଡ଼ା ନୂଆ ଆଦର୍ଶ, ନୂଆ ସଂସ୍କୃତିର ବିକାଶ ଲାଗି ଆଉ କୌଣସି କାରଣ ନଥାନ୍ତା ।

ଏହି ନୂଆ ରାଜନୀତି, ନୂଆ ଅର୍ଥନୀତି ଓ ନୂଆ ସଂସ୍କୃତିର ଶକ୍ତିଗୁଡ଼ିକ ଚୀନର ବୈପ୍ଳବିକ ଶକ୍ତି । କାରଣ ସେହି ଶକ୍ତିମାନେହିଁ ପୁରୁଣା ରାଜନୀତି ପୁରୁଣା ଅର୍ଥନୀତି ଓ ପୁରୁଣା ସଂସ୍କୃତିର ବିରୋଧ କରନ୍ତି । ପୁଣି ପୁରୁଣା ମଧ୍ୟ ଦୁଇଭାଗରେ ବିଭକ୍ତ । ପ୍ରଥମ ହେଉଛି ଚୀନର ନିଜର ଅର୍ଦ୍ଧ-ସାମନ୍ତବାଦୀ ରାଜନୀତି,ଅର୍ଥନୀତି ଓ ସଂସ୍କୃତି ଅନ୍ୟଟି ହେଉଛି ସାମ୍ରାଜ୍ୟବାଦୀ ରାଜନୀତି, ଅର୍ଥନୀତି ଓ ସଂସ୍କୃତି । ଏ ଦୁହିଁଙ୍କର ସହଯୋଗକୁ ଦ୍ୱିତୀୟଟି କର୍ତ୍ତୃତ୍ୱରେ ରଖିଛି । ସେଗୁଡ଼ିକ ସବୁ ପୂତିଗନ୍ଧମୟ ଏବଂ ତେଣୁ ତାକୁ ନିର୍ମୂଳ କରିବାକୁ ହେବ । ଚୀନ ସମାଜର ପୁରୁଣା ଓ ନୂଆ ଭିତରେ ସଂଗ୍ରାମ ହେଉଛି ଏକପକ୍ଷରେ ଜନସାଧାରଣଙ୍କ ନୂଆ ଶକ୍ତି(ବିଭିନ୍ନ ବୈପ୍ଳବିକଶ୍ରେଣୀ) ଅନ୍ୟ ପକ୍ଷରେ ସାମ୍ରାଜ୍ୟବାଦୀ ଓ ସାମନ୍ତବାଦୀ ଶ୍ରେଣୀ ମାନଙ୍କର ପୁରୁଣା ଶକ୍ତି ଭିତରେ ସଂଗ୍ରାମ । ଏ ସଂଗ୍ରାମ ଅଫିମଯୁଦ୍ଧଠାରୁ ଆଜିଯାଏ ଶହେବର୍ଷ ହେଲା ଓ ଯଦି ଆମେ ୧୯୧୧ବିପ୍ଳବଠାରୁ ହିସାବକରୁ ତିରିଶ ବର୍ଷ ହେଲା ଚାଲି ଆସିଛି ।

ପୂର୍ବରୁ କହିବା ମୁତାବକ ନୂଆ ଓ ପୁରୁଣା ବିପ୍ଳବ ଭିତରେ ମଧ୍ୟ ପାର୍ଥକ୍ୟ ରହିଛି । କୌଣସି ଏକ ନିର୍ଦ୍ଦିଷ୍ଟ ଐତିହାସିକ ଅବସ୍ଥାରେ ଯାହା ନୂଆ ହୋଇଥାଏ ଅନ୍ୟ ଅବସ୍ଥାରେ ତାହା ପୁରୁଣା ହୋଇଯାଏ ।

ଚୀନ ବୁର୍ଜୁୟା ଗଣତାନ୍ତ୍ରିକ ବିପ୍ଳବର ଶହେବର୍ଷକୁ ମଧ୍ୟ ଦୁଇ ସ୍ତରରେ ବିଭକ୍ତ କରାଯାଇପାରେ । ପ୍ରଥମ ଅଶି ବର୍ଷକୁ ଧରି ଗୋଟିଏ ସ୍ତର ଓ ପର କୋଡ଼ିଏ ବର୍ଷକୁ ଧରି ଅନ୍ୟସ୍ତର । ଦୁଇଟି ଯାକ ସ୍ତରର ମୌଳିକ ଐତିହାସିକ ବୈଶିଷ୍ଟ୍ୟ ରହିଛି । ପ୍ରଥମ ଅଶିବର୍ଷ ଭିତରେ ବୁର୍ଜୁୟା ଗଣତାନ୍ତ୍ରିକ ବିପ୍ଳବ ପୁରୁଣା ପର୍ଯ୍ୟାୟଭୁକ୍ତ ଥିଲା । କିନ୍ତୁ ପର କୋଡ଼ିଏ ବର୍ଷରେ ଆନ୍ତର୍ଜାତିକ ଓ ଅଭ୍ୟନ୍ତରୀଣ ଅବସ୍ଥାର ପରିବର୍ତ୍ତନ ଫଳରେ ତାହା ନୂଆ ପର୍ଯ୍ୟାୟଭୁକ୍ତ ହେଲା । ତେଣୁ ପ୍ରଥମ ଅଶିବର୍ଷର ବୈଶିଷ୍ଟ୍ୟକୁ ଘେନି ପୁରୁଣା ଗଣତନ୍ତ୍ର ଓ ତାର କୋଡ଼ିଏ ବର୍ଷର ବୈଶିଷ୍ଟ୍ୟକୁ ଘେନି ନୂଆ ଗଣତନ୍ତ୍ର । ଏହି ପାର୍ଥକ୍ୟ ଉଭୟ ସଂସ୍କୃତି ଓ ରାଜନୀତି କ୍ଷେତ୍ରରେ ସତ୍ୟ ।

ନିମ୍ନରେ କିପରି ସାଂସ୍କୃତିକ କ୍ଷେତ୍ରରେ ଏହି ପାର୍ଥକ୍ୟ ପ୍ରକାଶ ପାଇଲା ତାହା ଦର୍ଶାଇବା ।

---

— ବାର —

## ଚୀନ-ସାଂସ୍କୃତିକ ବିପ୍ଳବର ଐତିହାସିକ ବୈଶିଷ୍ଟ୍ୟ

ସାଂସ୍କୃତିକ ଆଦର୍ଶ କ୍ଷେତ୍ରକୁ ଦୁଇଟି ଐତିହାସିକ ସମୟରେ ଭାଗ କରିହେବ—ଯଥା ୧୯୨୯ ମଇ ଚୌଠ ଆନ୍ଦୋଳନର ପୂର୍ବ ଓ ପରବର୍ତ୍ତୀ ସମୟ ।

ମଇ ଚୌଠ୍ ଆନ୍ଦୋଳନ ପୂର୍ବରୁ ଚୀନରେ ସାଂସ୍କୃତିକ ସାମ୍ମୁଖ୍ୟରେ ସଂଗ୍ରାମ ବୁର୍ଜୁୟାଶ୍ରେଣୀର ନୂଆ ସଂସ୍କୃତି ଓ ସାମନ୍ତବାଦୀ ଶ୍ରେଣୀର ପୁରୁଣା ସଂସ୍କୃତି ଭିତରେ ସଂଗ୍ରାମ ଥିଲା । ଆଧୁନିକ ବିଦ୍ୟାଳୟ ପ୍ରଥା ଏବଂ ପୁରୁଣା ରାଜକୀୟ କୁ-ଚୁ ପରୀକ୍ଷା ପ୍ରଥା ଭିତରେ ସଂଗ୍ରାମ, ପୁରାତନ ଶିକ୍ଷା ଓ ନୂତନ ଶିକ୍ଷା ଭିତରେ ସଂଗ୍ରାମ, ଚୀନର ଶିକ୍ଷା ଓ ପଶ୍ଚିମୀ ଶିକ୍ଷା ଭିତରେ ସଂଗ୍ରାମରେହିଁ ଏହି ପ୍ରକୃତି ନିହିତ ଥିଲା । ସେ ସମୟର ତଥା କଥିତ ସ୍କୁଲ୍, ନୂଆ ବିଦ୍ୟା, ପଶ୍ଚିମୀ ବିଦ୍ୟା ଏସବୁ ମୂଳତଃ ବୁର୍ଜୁୟାଶ୍ରେଣୀର ପ୍ରାକୃତିକ ଓ ସାମାଜିକ ବିଜ୍ଞାନ ଥିଲା । (ଆମେ ଏଠି "ମୂଳତଃ" କହୁଚୁ କାରଣ ସେଥିରେ ସାମନ୍ତବାଦୀ ବିଷର କିଛି ଅବଶେଷ ରହିଥିଲା ) । ଯେଉଁସବୁ ସାମାଜିକ ବିଜ୍ଞାନର ଗ୍ରନ୍ଥ ୟେନ୍ ଫୁ ଆମଦାନି କରିଥିଲେ ସେଗୁଡ଼ିକ ହେଉଚି ଡ଼ାର୍‌ଉଇନ୍‌ଙ୍କର ବିକାଶତତ୍ତ୍ୱ, ଆଦାମସ୍ମିଥ୍‌ଙ୍କର ଶାସ୍ତ୍ରୀୟ ଅର୍ଥନୀତି— ମିଲ୍‌ଙ୍କର ସାଧାରଣ ତର୍କ ବିଦ୍ୟା, ଫରାସୀ ପଣ୍ଡିତ ମଣ୍ଟେସ୍କ୍ୟୁଙ୍କର ସମାଜତତ୍ତ୍ୱ । ସେ ଗୁଡ଼ିକ ସଙ୍ଗେ ସେ ଯୁଗର ପ୍ରାକୃତିକ ବିଜ୍ଞାନ ମଧ୍ୟ ମିଶିଥିଲା । ମଇଚୌଠ୍ ଆନ୍ଦୋଳନ ପୂର୍ବରୁ ଏ ଗୁଡ଼ିକହିଁ କୁହା ଯାଉଥିବା ନୂତନବିଦ୍ୟାର ପ୍ରଭାବଶାଳୀ ଭାବଧାରା ସୃଷ୍ଟି କରିଥିଲା । ସେ ସମୟରେ ଏହିସବୁ ଭାବଧାରା ସାମନ୍ତବାଦୀ ଭାବଧାରା ବିରୁଦ୍ଧରେ ଚାଲିଥିବା ସଂଗ୍ରାମରେ ବୈପ୍ଳବିକ ଭୂମିକା ଗ୍ରହଣ କରିଥିଲା ଏବଂ ପୁରୁଣା ସମୟର ବୁର୍ଜୁୟା ଗଣତାନ୍ତ୍ରିକ ବିପ୍ଳବକୁ ସାହାଯ୍ୟ କରିଥିଲା । ଯାହା ହେଉନା କାହିଁକି ଚୀନ ବୁର୍ଜୁୟାର ଦୁର୍ବଳତା ହେତୁ ଓ ପୃଥିବୀ ସାମ୍ରାଜ୍ୟବାଦୀ ଯୁଗରେ ପହଞ୍ଚି ଯାଇଥିବା କାରଣରୁ ଏ ପ୍ରକାର ବୁର୍ଜୁୟା ଚିନ୍ତାଧାରା ଚୀନରେ ବେଶୀଦିନ ଟିକି ପାରିଲାନାହିଁ ଏବଂ ସାମ୍ରାଜ୍ୟବାଦୀ-ଦାସ ମନୋଭାବ ଓ ସାମନ୍ତବାଦର ପୁରୁଣା ପ୍ରଥାକୁ ପୁନର୍ପ୍ରତିଷ୍ଠିତ କରାଇବା ମନୋଭାବ

ଅର୍ଥାତ୍ ଏହି ଦୁଇ ପ୍ରତିକ୍ରିୟାଶୀଳ ମନୋଭାବର ମିଳନ; ଚୀନ ବୁର୍ଜୁଆ ଚିନ୍ତାଧାରାକୁ ତୁରନ୍ତ ହଟେଇଦେଲା । ଏହି ପ୍ରତିକ୍ରିୟାଶୀଳ ମନୋଭାବର ମିଳନର ସାମାନ୍ୟ ପ୍ରତି ଆକ୍ରମଣରେ ତଥାକଥିତ ନୂଆ ଶିକ୍ଷା "ତାର ପୁତ୍ରାପୁତ୍ରୀ ବାନ୍ଧିଦେଲା ଓ ପଛକୁ ନିଜେ ହଟିଗଲା ବୋଲି ଜଣେଇଦେଲା । ତାର ଆତ୍ମା ଉଡ଼ିଗଲା—ଖାଲି ରହିଲା କଙ୍କାଳ । ତେଣୁ ସାମ୍ରାଜ୍ୟବାଦୀ ଯୁଗରେ ପୁରୁଣା ବୁର୍ଜୁଆ ଗଣତାନ୍ତ୍ରିକ ବିପ୍ଳବର ସଂସ୍କୃତି ଅତି ପଙ୍କିଳ ଓ ନିସ୍ତେଜ ହୋଇପଡ଼ିଲା ।

ମଇ ଚୈାର ଆନ୍ଦୋଳନ ଏକ ନୂଆ ସ୍ତର ଆଣିଲା । ଏହି ଆନ୍ଦୋଳନ ପରେ ଚୀନରେ ଏକ ନୂଆ ସାଂସ୍କୃତିକ ଶକ୍ତିର ଜନ୍ମ ହେଲା । ତାହା ହେଉଛି ଚୀନ କମ୍ୟୁନିଷ୍ଟଙ୍କ ଦ୍ୱାରା ପରିଚାଳିତ କମ୍ୟୁନିଷ୍ଟ ସାଂସ୍କୃତିକ ଚିନ୍ତାଧାରା ଅର୍ଥାତ୍ ସାମାଜିକ ବିପ୍ଳବ ବିଷୟକ କମ୍ୟୁନିଷ୍ଟ ତତ୍ତ୍ୱ ଓ ବିଶ୍ୱ ସମ୍ବନ୍ଧରେ କମ୍ୟୁନିଷ୍ଟ ଭାବଧାରା । ମଇ ଚୈାର ଆନ୍ଦୋଳନ ୧୯୧୯ ଘଟିଥିଲା । ( କମ୍ୟୁନିଷ୍ଟ ପାର୍ଟିର ଆରମ୍ଭ ଓ ଚୀନ ଶ୍ରମିକ ଆନ୍ଦୋଳନ ୧୯୨୧ରେ ଘଟିଥିଲା) ଏହା ପ୍ରଥମ ମହାଯୁଦ୍ଧ ଓ ରୁଷ ଅକ୍ଟୋବର ବିପ୍ଳବ ପରେ ପରେ ଘଟିଲା । ସେତେବେଳେ ପୃଥିବୀରେ ଜାତୀୟ ସମସ୍ୟା ଓ ଔପନିବେଶିକ ଆନ୍ଦୋଳନ ନିଜ ନିଜର ପୁରାତନ ମୁଖକୁ ବଦଳାଇବାକୁ ଆରମ୍ଭ କଲେ । ଚୀନ ବିପ୍ଳବ ଓ ପୃଥିବୀ ବିପ୍ଳବର ଏହି ସମ୍ପର୍କ ଅତି ସ୍ପଷ୍ଟ । ଚୀନର ରାଜନୀତି କ୍ଷେତ୍ରରେ—ଚୀନ ସର୍ବହରା ଓ ଚୀନ କମ୍ୟୁନିଷ୍ଟ ପାର୍ଟି—ଏହି ନୂଆ ରାଜନୈତିକ ଶକ୍ତିର ଉଦୟ ହେବାରୁ ଏକ ନୂଆ ସାଂସ୍କୃତିକ ଶକ୍ତିର ଜନ୍ମହେଲା । ଉକ୍ତ ସାଂସ୍କୃତିକ ଶକ୍ତି ନିଜର ନୂତନ ବେଶଭୂଷା, ନୂତନ ଅସ୍ତ୍ର

ଶସ୍ତ୍ର ଏବଂ ସମ୍ଭାବ୍ୟ ସହଯୋଗୀମାନଙ୍କ ସାହାଯ୍ୟ ନେଇ ନିଜ ଶକ୍ତିର ପରିଚୟ ଦେଲା ଏବଂ ସାମ୍ରାଜ୍ୟବାଦୀ ଓ ସାମନ୍ତବାଦୀ ସଂସ୍କୃତି ଉପରେ ସାହସପୂର୍ଣ୍ଣ ଚଢ଼ାଉ କଲା । ଏହି ନୂଆ ଶକ୍ତିର କେତେଗୁଡ଼ିଏ ଅସୁବିଧା ରହିଥିଲା । ଯଥାଃ— ପ୍ରାକୃତିକ ବିଜ୍ଞାନ କ୍ଷେତ୍ରରେ ତାର ଭିତ୍ତି ପକେଇବାକୁ ସେହି ନୂଆଶକ୍ତିକୁ ଯଥେଷ୍ଟ ସମୟ ମିଳିନଥିଲା । ତେଣୁ ବୁର୍ଜୁୟା ବିଶ୍ୱତତ୍ତ୍ୱ ହାତରେ ଏହିପରିକା ବିଜ୍ଞାନ ଗୁଡ଼ିକୁ କିଛିକାଳ ପାଇଁ ଛାଡିଦେବାକୁ ତାକୁ ପଡ଼ିଥିଲା । ଏ ସବୁ ସତ୍ତ୍ୱେ ଔପନିବେଶିକ ଅର୍ଦ୍ଧ ଔପନିବେଶିକ ବିପ୍ଲବ ସମୟରେ ଏହି ନୂତନ ଶକ୍ତି ଚିନ୍ତାଅଭ୍ୟେକର ଖୁବ୍ ଗୁରୁତ୍ୱ ପୂର୍ଣ୍ଣ "କ୍ଷେତ୍ର" ସାମାଜିକ ବିଜ୍ଞାନରେ ଏକ ବିରାଟ ବିପ୍ଳବ ଆଣି ଦେଲା । ସାମାଜିକ ବିଜ୍ଞାନ କ୍ଷେତ୍ରରେ, ତାହା ଦର୍ଶନ, ଅର୍ଥନୀତି, ରାଜନୀତି ହେଉ ଅବା ସାମରିକ ବିଜ୍ଞାନ, ଇତିହାସ, ସାହିତ୍ୟ କିମ୍ବା କଳା (ନାଟକ, ଚଳଚିତ୍ର, ସଂଗୀତ, ଭାସ୍କର୍ଯ୍ୟ ଓ ଚିତ୍ରକଳା) ହେଉ ଏ ସବୁ କ୍ଷେତ୍ରରେ ବିରାଟ ଅଗ୍ରଗତି ହୋଇଛି । ଏହି କୋଡ଼ିଏ ବର୍ଷ ଭିତରେ ଏହି ନୂଆ ସାଂସ୍କୃତିକ ଶକ୍ତିର ତରବାରି ଯେଉଁ ପର୍ଯ୍ୟନ୍ତ ପାଇଛି ସେ କ୍ଷେତ୍ରରେ ଚିନ୍ତାରାଜ୍ୟରେ ହେଉ ଅବା ତାର ରୂପ ପ୍ରକାଶରେ ( ଯଥା ଭାଷା ପ୍ରଭୃତି ) ହେଉ ବିରାଟ ବିପ୍ଳବ ଆଣି ଦେଇଛି । ଏହାର ଶକ୍ତିର ବିରାଟତା ଅତୁଳନୀୟ ଏବଂ ଏହାର ଶକ୍ତି ସମାବେଶ ଚୀନ ଇତିହାସର ସମସ୍ତ ଯୁଗକୁ ବଳି ଯାଇଛି ।' ଏହି ନୂଆ ସାଂସ୍କୃତିକ ଶକ୍ତିର ସର୍ବ ବିରାଟ ଓ ମହାନ ନିର୍ଭୀକ ନେତା ହେଉଛନ୍ତି ଲୁସନ । ଚୀନ ସାଂସ୍କୃତିକ ବିପ୍ଳବର ଲୁସନ ହେଉଛନ୍ତି ସେନାପତି । ସେ ଖାଲି ଜଣେ ବିରାଟ ସାହିତ୍ୟିକ ନଥିଲେ । ସେ ମଧ୍ୟ ଏକ ମହାନ ବିପ୍ଳବୀ ଓ ବିରାଟ ଭାବୁକ ଥିଲେ । ସେ ପର୍ବତ ପରି ଅଟଳ ଥିଲେ । ତାଙ୍କଠାରେ ଦାସତ୍ୱ

ବା ଗୃହଚ୍ଚ କାସ୍ତାର ଚିହ୍ନମାତ୍ର ନଥିଲା । ଔପନିବେଶିକ ଓ ଅର୍ଦ୍ଧଔପନିବେଶିକ ଜନତାର୍ ମହାମୂଲ୍ୟ ଗୁଣ ତାଙ୍କଠାରେ ବିଦ୍ୟମାନ ଥିଲା । ଲୁସନ ଏକ ଅଭୂତପୂର୍ବ, ମହାନ୍, ନିର୍ଭୀକ, ଖୁବ୍ ସୁଦୃଢ଼, ଖୁବ୍ ସତ୍ୟନିଷ୍ଠ, ଅତୀବ ନିର୍ଭୁଲ ଓ ଖୁବ୍ ଏକନିଷ୍ଠ ଜାତୀୟ ବୀର ଥିଲେ । ସେ ଥିଲେ ଅଧିକାଂଶ ଜନତାର ପ୍ରତିନିଧି । ସାଂସ୍କୃତିକ ସାମ୍ମୁଖ୍ୟରେ ସେ ଶତ୍ରୁ ଅଡ଼କୁ ଦୃଢ଼ଭାବରେ ଅଗ୍ରସର ହୋଇଥିଲେ । ଲୁସନ୍‌ଙ୍କର ଗତିପଥ ଚୀନଜାତିର ନୂଆ ସଂସ୍କୃତିର ଗତିପଥ ।

ମଇ ଚୁଥ ଆନ୍ଦୋଳନ ପୂର୍ବରୁ ଚୀନର ନୂଆ ସଂସ୍କୃତିରେ ପୁରୁଣା ଗଣତନ୍ତ୍ରର ପ୍ରକୃତି ନିହିତ ଥିଲା ଓ ତାହା ପୃଥିବୀ ବୁର୍ଜୁଆ ଶ୍ରେଣୀର ପୁଂଜିବାଦୀ ସାଂସ୍କୃତିକ ବିପ୍ଳବର ଅଂଶମାତ୍ର ଥିଲା । ତାହା-ପରେ ଏହାର ନୂଆ ଗଣତାନ୍ତ୍ରିକ ପ୍ରକୃତି ଆସିଲା ଏବଂ ଏହା ପୃଥିବୀ ସର୍ବହରାର ସମାଜବାଦୀ ସାଂସ୍କୃତିକ ବିପ୍ଳବର ଅଙ୍ଗ ହେଲା ।

ମଇ ଚୁଥ ଆନ୍ଦୋଳନ ପୂର୍ବରୁ ନୂଆ ସାଂସ୍କୃତିକ ଆନ୍ଦୋଳନ ଅର୍ଥାତ ଚୀନର ସାଂସ୍କୃତିକ ବିପ୍ଳବ ବୁର୍ଜୁଆ ଶ୍ରେଣୀ ଦ୍ୱାରା ପରିଚାଳିତ ହେଉଥିଲା । ମଇଚୁଥ ଆନ୍ଦୋଳନ ବୁର୍ଜୁଆ ସାଂସ୍କୃତିକ ଚିନ୍ତାଧାରା ବୁର୍ଜୁଆ ରାଜନୀତି ଅପେକ୍ଷା ଆହୁରି ଅଧିକ ପଛୁଆ ହୋଇଗଲା ଏବଂ ତାହା ଆଉ ସାଂସ୍କୃତିକ ଆନ୍ଦୋଳନର ନେତା ହୋଇ ରହି ପାରିଲା ନାହିଁ । ବୈପ୍ଳବିକ ଯୁଗରେ ଏହା କେବଳ ସାଂସ୍କୃତିକ ମୋର୍ଚ୍ଚାରେ କିଛି ମାତ୍ରାରେ ଯୋଗ ଦେଇପାରେ । ମାତ୍ର ତାହାର ନେତୃତ୍ୱର ଭାର ସର୍ବହରା ସାଂସ୍କୃତିକ ଭାବଧାରା ଉପରେ ପଡ଼ୁଛି । ଏହି ଘଟଣା ଲୁହା ପରି କଠିନ । କେହି ଏହା ଅସ୍ୱୀକାର କରି ପାରିବେ ନାହିଁ ।

ଆମେ ଯାହାକୁ ନୂଆ ଗଣତନ୍ତ୍ରର ସଂସ୍କୃତି ବୋଲି କହୁଛୁଁ ତାହା ହେଉଛି ଜନଗଣ ଓ ଜନସାଧାରଣଙ୍କର ସାମ୍ରାଜ୍ୟବାଦ ବିରୋଧୀ ଓ ସାମନ୍ତବାଦ ବିରୋଧୀ ସଂସ୍କୃତି । ଆଜି ଏହା ହେଉଛି ଜାପାନ ବିରୋଧୀ ମିଳିତ ସାମ୍ମୁଖ୍ୟର ସଂସ୍କୃତି । ଏହା କେବଳହିଁ ସର୍ବହରାର ସାଂସ୍କୃତିକ ଚିନ୍ତାଧାରା ଅର୍ଥାତ କମ୍ୟୁନିଜିମ ଚିନ୍ତାଧାରା ଦ୍ୱାରା ପରିଚାଳିତ ହେବ ଏବଂ ଅନ୍ୟ କୌଣସି ଶ୍ରେଣୀଦ୍ୱାରା ପରିଚାଳିତ ହୋଇ ପାରେନା । ଏକ କଥାରେ କହିବାକୁ ଗଲେ ନୂଆ ଗଣତନ୍ତ୍ରର ସଂସ୍କୃତି ହେଉଛି "ସର୍ବହରା ଦ୍ୱାରା ପରିଚାଳିତ ସାମ୍ରାଜ୍ୟବାଦ ବିରୋଧୀ, ସାମନ୍ତବାଦ ବିରୋଧୀ ଜନଗଣ ଓ ଜନସାଧାରଣଙ୍କ ସଂସ୍କୃତି ।"

— ୧୩ —

## — ଚାରିଯୁଗ —

ଏକ ସାଂସ୍କୃତିକ ବିପ୍ଳବ ଆଦର୍ଶ ଦୃଷ୍ଟିରୁ ରାଜନୈତିକ ଓ ଅର୍ଥନୈତିକ ବିପ୍ଳବକୁ ପ୍ରତିଫଳିତ କରେ ଓ ସାହାଯ୍ୟ କରେ । ତେଣୁ ଚୀନରେ ରାଜନୀତିପରି ସଂସ୍କୃତି ପ୍ରସଙ୍ଗରେ ମଧ୍ୟ ମିଳିତ ସାମ୍ମୁଖ୍ୟ ଆବଶ୍ୟକ ।

ଏହି କୋଡ଼ିଏ ବର୍ଷରେ ସାଂସ୍କୃତିକ ବିପ୍ଳବର ମିଳିତ ସାମ୍ମୁଖ୍ୟକୁ ଚାରି ଯୁଗରେ ବିଭକ୍ତ କରି ଯାଇପାରେ । ପ୍ରଥମ ଯୁଗ ୧୯୧୯ରୁ ୧୯୨୧ ଯାଏ, ଦ୍ୱିତୀୟ ଯୁଗ ୧୯୨୧ରୁ ୧୯୨୭ ଯାଏ, ତୃତୀୟ ଯୁଗ ୧୯୨୭ରୁ ୧୯୩୭ ଯାଏ ଏବଂ ଚତୁର୍ଥ ଯୁଗ ୧୯୩୭ରୁ ଆଜିଯାଏ । (ଅର୍ଥାତ ଜାପାନ ବିରୋଧୀ ମିଳିତ ପ୍ରତିରୋଧ ଯାଏ—ଅନୁବାଦକ )

୧୯୧୯ ମଇଚୌଥ ଆନ୍ଦୋଳନର ଆରମ୍ଭରୁ ୧୯୨୧ରେ ଚୀନ କମ୍ୟୁନିଷ୍ଟ ପାର୍ଟି ପ୍ରତିଷ୍ଠିତ ହେବା ପର୍ଯ୍ୟନ୍ତ ପ୍ରଥମ ଯୁଗ । ସେହି ଯୁଗର ମଇଚୌଥ ଆନ୍ଦୋଳନ ହେଉଛି ମୁଖ୍ୟ ବିଜୟ ବାନା ।

· ମଇଚୌଥ ଆନ୍ଦୋଳନ ହେଉଛି ସାମ୍ରାଜ୍ୟବାଦ ବିରୋଧୀ ଆହୁରି ମଧ୍ୟ ସାମନ୍ତବାଦ ବିରୋଧୀ ଆନ୍ଦୋଳନ । ଏହାର ପ୍ରଧାନ-ଐତିହାସିକ ତାତ୍ପର୍ଯ୍ୟ ଯେ ୧୯୧୧ ବିପ୍ଳବରେ ଯାହା ନଥିଲା ସେହି ପରି ଏକ ବିଶେଷତ୍ୱ ଏହାଠାରେ ଥିଲା । ଏହା ସାମ୍ରାଜ୍ୟବାଦ ଓ ସାମନ୍ତ ବାଦକୁ ଅପୋଷହୀନ ଓ ସଂପୂର୍ଣ୍ଣ ଭାବେ ବିରୋଧ କରିଥିଲା । ମଇଚୌଥ ଆନ୍ଦୋଳନର ଏହି ବିଶେଷତ୍ୱ ଥିବାର କାରଣ ନିମ୍ନପ୍ରକାର ଯଥା—ସେତେବେଳେ ଚୀନର ପୁଞ୍ଜିବାଦୀ ଅର୍ଥନୀତିର ବିକାଶରେ ନୂତନ ପଦକ୍ଷେପ ଦେଖା ଯାଇଥିଲା, ସେତେବେଳେ ଚୀନର ବିପ୍ଳବୀ ବୁଦ୍ଧିଜୀବୀ ସଂପ୍ରଦାୟ ଋଷ, ଜର୍ମାନୀ ଓ ଅଷ୍ଟ୍ରିଆ ପରି ବଡ଼ ସାମ୍ରାଜ୍ୟବାଦୀ ଶକ୍ତିଙ୍କର କ୍ଷୟ ଦେଖିଲେ ଓ ବ୍ରିଟେନ୍ ଓ ଫ୍ରାନ୍ସକୁ ସଙ୍କୁଚିତ ହେବାର ଦେଖିଲେ । ସେମାନେ ମଧ୍ୟ ଋଷ ସର୍ବହରା ଶ୍ରେଣୀ ଦ୍ୱାରା ସମାଜ ବାଦୀ ରାଷ୍ଟ୍ରଗଠନ ଦେଖିଲେ ଏବଂ ଜର୍ମାନ, ଅଷ୍ଟ୍ରିଆ, ହଙ୍ଗେରୀ ଓ ଇଟାଲୀ ଯେ ସର୍ବହରା ବିପ୍ଳବର ଆଲୋଡନରେ ପଡ଼ିଛି ତାହା ସେମାନଙ୍କ ଦୃଷ୍ଟିରେ ପଡ଼ିଲା । ଚୀନଜାତିର ମୁକ୍ତିପାଇଁ ଏସବୁ ସେମାନଙ୍କ ମନରେ ନୂତନ ଆଶା ସଂଚାର କଲା । ବିଶ୍ୱବିପ୍ଳବର ଆହ୍ୱାନ, ଋଷ ବିପ୍ଳବ ଓ ଲେନିନ୍‌ଙ୍କ ଆହ୍ୱାନରେ ମଇଚୌଥ ଆନ୍ଦୋଳନ ଆରମ୍ଭ ହେଲା । ଏହା ସେତେବେଳର ସର୍ବହରା ବିପ୍ଳବର ଅଙ୍ଗଥିଲା । ମଇଚୌଥ ଆନ୍ଦୋଳନ ବେଳେ ଅବଶ୍ୟ କମ୍ୟୁନିଷ୍ଟ ପାର୍ଟି ନଥିଲା । ମାତ୍ର ଅନେକ ବୁଦ୍ଧିଜୀବୀଙ୍କର ପ୍ରାଥମିକ କମ୍ୟୁନିଷ୍ଟ ଚିନ୍ତାଧାରାଥିଲା ଏବଂ ସେମାନେ ଋଷ ବିପ୍ଳବକୁ ସମର୍ଥନ କରୁଥିଲେ ।

ମଇଚ୍ଛୁର ଅନ୍ଦୋଳନ ଅରମ୍ଭରେ ତିନିରକମ ଲୋକଙ୍କର ଏକ ମିଳିତ ସାମ୍ରାଜ୍ୟ ବିପ୍ଳବୀ ଅନ୍ଦୋଳନ ଥିଲା । ସେଥିରେ ଥିଲେ କମ୍ୟୁନିଷ୍ଟ ବୁଦ୍ଧିଜୀବୀ, ବିପ୍ଳବୀ ପେଟି ବୁର୍ଜୁୟା ବୁଦ୍ଧିଜୀବୀ ଓ ବୁର୍ଜୁୟା ବୁଦ୍ଧିଜୀବୀ (ଯେଉଁମାନେ କି ଦକ୍ଷିଣ ପନ୍ଥୀଥିଲେ ) ଏହି ଅନ୍ଦୋଳନର ଦୁର୍ବଳତା ଯେ ଏଥିରେ କେବଳ ବୁଦ୍ଧିଜୀବୀମାନେ ଯୋଗ ଦେଇ-ଥିଲେ, ଶ୍ରମିକ ବା କୃଷକ ଯୋଗ ଦେଇ ନ ଥିଲେ । କିନ୍ତୁ ଯେମିତି ଏହା ତିନି ତାରିଖ ଜୁନ ଅନ୍ଦୋଳନକୁ ଗତିକଲା, ସେତେବେଳେ ଏଥିରେ କେବଳ ବୁଦ୍ଧିଜୀବୀ ନୁହେଁ, ସର୍ବହରା ଶ୍ରେଣୀର ସାଧାରଣ ଜନତା, ପେଟିବୁର୍ଜୁୟା ଓ ବୁର୍ଜୁୟାଶ୍ରେଣୀ ଯୋଗ ଦେଲେ ଏବଂ ଏହା ଏକ ଜାତୀୟ ବିପ୍ଳବୀ ଅନ୍ଦୋଳନରେ ପରିଣତ ହେଲା । ମଇଚ୍ଛୁରର ସାଂସ୍କୃତିକ ଅନ୍ଦୋଳନ ସାମନ୍ତବାଦୀ ସଂସ୍କୃତିକୁ ସଂପୂର୍ଣ୍ଣ ଭାବେ ବିରୋଧ କରିଥିଲା ଏବଂ ଚୀନ ଇତିହାସରେ ଏପରି ବିରାଟ ଓ ସଂପୂର୍ଣ୍ଣ ସାଂସ୍କୃତିକ ବିପ୍ଳବ କେବେ ଦେଖାଯାଇ ନଥିଲା । ଏହି ଅନ୍ଦୋଳନ ଦୁଇପ୍ରକାର ସଫଳତା ହାସଲ କରିଥିଲା । ଏହା ପୁରାତନ ନୈତିକତାର ବିରୋଧ କରିଥିଲା ଓ ନୂତନ ନୈତିକତା ଆଗକୁ ନେଇ ଯାଇଥିଲା । ଏହାପୁରୁଣା ସାହିତ୍ୟକୁ ବିରୋଧ କରିଥିଲା ଓ ନୂଆ ସାହିତ୍ୟକୁ ଆଗକୁ ନେଇ ଯାଇଥିଲା । ସେତେବେଳେ ସାଂସ୍କୃତିକ ଅନ୍ଦୋଳନ ଶ୍ରମିକ ଓ କୃଷକଙ୍କ ଭିତରେ ପ୍ରସାର କରିବାକୁ କ୍ଷମ ହୋଇପାରି ନଥିଲା । ଏହା ସ୍ଲୋଗାନ ହେଲା "ଜନ ସାହିତ୍ୟ" ଅବା "ସାଧାରଣ ଲୋକଙ୍କ ଲାଗି ସାହିତ୍ୟ" ଅଣିବାକୁ ହେବ । ମାତ୍ର ସେତେବେଳେ ଲୋକ ବୋଲି ସହରର ପେଟିବୁର୍ଜୁୟା ଓ ବୁର୍ଜୁୟା ବୁଦ୍ଧିଜୀବୀଙ୍କୁ ବୁଝା ଯାଉଥିଲା । ୧୯୨୧ରେ କମ୍ୟୁନିଷ୍ଟପାର୍ଟିର ଗଠନ ଓ ଭବିଷ୍ୟତ୍‌ରେ ମଇ ୩୦ ଅନ୍ଦୋଳନ ଓ ଉତ୍ତରମୁଖୀ ଅଭିଯାନ ଲାଗି ଚିନ୍ତାଧାରା ଓ କର୍ମୀ ପ୍ରସ୍ତୁତ କରିବାରେ ମଇ ଚ୍ଛୁର ଅନ୍ଦୋଳନ ବାଟ ଫିଟେଇ

ଦେଲା । ମଇ ଚୃଥ ଆନ୍ଦୋଳନବେଳେ ବୁର୍ଜୁୟା ବୁଦ୍ଧିଜୀବୀମାନେ ଦକ୍ଷିଣ ପନ୍ଥୀ ଥିଲେ ଓ ଦ୍ୱିତୀୟ ଯୁଗ ଆରମ୍ଭ ହେବାରୁ ସେମାନଙ୍କ ଭିତରୁ ଅଧିକାଂଶ ଶତ୍ରୁ ସଙ୍ଗେ ଆପୋଷ କରିନେଲେ ଓ ପ୍ରତିକ୍ରିୟା ଶୀଳ ହୋଇଗଲେ ।

ଦ୍ୱିତୀୟ ଯୁଗର ସଙ୍କେତ ହେଉଛି ଚୀନ କମ୍ୟୁନିଷ୍ଟପାର୍ଟି ଗଠନ, ୧୯୨୫ର ମଇ ୩୦ ଆନ୍ଦୋଳନ ଓ ଉତ୍ତରମୁଖୀ ଅଭିଯାନ । ମଇ ଚୃଥ ଆନ୍ଦୋଳନବେଳେ ଥିବା ତିନିଶ୍ରେଣୀର ମିଳିତ ସାମ୍ମୁଖ୍ୟକୁ ଏହି ଦ୍ୱିତୀୟ ଯୁଗ ବଢ଼େଇ ଆଗକୁ ନେଇଗଲା, ଏବଂ ରାଜନୈତିକ କ୍ଷେତ୍ରରେ ମିଳିତ ସାମ୍ମୁଖ୍ୟ ଆଣିଦେଲା—ଅର୍ଥାତ୍ ପ୍ରଥମ କୋମିନ୍‌ଟାଙ୍ଗ – କମ୍ୟୁନିଷ୍ଟ ସହଯୋଗ ପ୍ରତିଷ୍ଠିତ ହେଲା । ଡ଼ାକ୍ତର ସାନ୍‌ୟାତ୍‌ସେନ ଖାଲି ବିରାଟ ୧୯୧୧ ବିପ୍ଳବକୁ ନେତୃତ୍ୱ ଦେଇ ଥିଲେ (ଯଦିଚ ଉକ୍ତ ବିପ୍ଳବ ପୁରୁଣା ଯୁଗର ଗଣତାନ୍ତ୍ରିକ ବିପ୍ଳବ ଥିଲା) ବୋଲି ମହାନ ନୁହନ୍ତି, ସେ "ଜନ ସାଧାରଣଙ୍କ ଦାବୀର ସମ୍ମୁଖୀନ ହେବାକୁ ଏବଂ ଦୁନିଆର ଗତି ସ୍ରୋତ ସଙ୍ଗେ ନିଜକୁ ସାମିଲ କରିବାରେ ସମର୍ଥ ହେବାରୁ" ମହାନ୍ ଅଟନ୍ତି । ସୋଭିଏଟ୍ ୟୁନିଅନ ସଙ୍ଗେ ବନ୍ଧୁତା, କମ୍ୟୁନିଷ୍ଟମାନଙ୍କ ସଙ୍ଗେ ସହଯୋଗ ଏବଂ ଶ୍ରମିକ ଓ କୃଷକମାନଙ୍କୁ ସାହାଯ୍ୟ ଓ ସେମାନଙ୍କ ସ୍ୱାର୍ଥରକ୍ଷା ଏହି ତିନୋଟି ବିପ୍ଳବୀ ନୀତିକୁ ଏକତ୍ର କରି ସେ ତାଙ୍କ ସାନମିନ୍-ଚୁଆଇକୁ ସଂଶୋଧନ କରିଥିଲେ ଓ ନୂଆ ସାନ୍‌ମିନ୍‌ଚୁଆଇ ପ୍ରତିଷ୍ଠା କରିଥିଲେ । ଏହାହିଁ ଥିଲା ଜନ ସାଧାରଣଙ୍କ ଦାବୀ । ଏହା ପୂର୍ବରୁ ଶିକ୍ଷା କ୍ଷେତ୍ରରେ, ସଂସ୍କୃତି କ୍ଷେତ୍ରରେ ଓ ଯୁବ ସମ୍ପ୍ରଦାୟ ପାଖରେ ସାନ୍‌ମିନ୍‌ଚୁଆଇର ବିଶେଷ ଆକର୍ଷଣ ନଥିଲା, କାରଣ ସେପର୍ଯ୍ୟନ୍ତ ସେଥିରେ ସାମ୍ରାଜ୍ୟବାଦ ବିରୋଧୀ ଓ ସାମନ୍ତବାଦ ବିରୋଧୀ

ସ୍ଲୋଗାନ ନଥିଲା । ସେ ଯାଏ ତାହା ପୁରୁଣା ସାନ୍ ମିନ୍ ଚୁଆଇ ଥିଲା । କ୍ଷମତା ହାସଲ କରିବାକୁ ବା "ଅମଲା ତାନ୍ତ୍ରିକ ଗଦିରେ ବସିବାକୁ" ଥୋକେ ଲୋକ ଏହାକୁ କେବଳ ଏକ ସାମୟିକ ବାନା ହିସାବରେ ବ୍ୟବହାର କରନ୍ତି ବୋଲି ସାଧାରଣ ଲୋକଙ୍କର ବିଶ୍ବାସ ଥିଲା । ଅନ୍ୟ କଥାରେ ରାଜନୈତିକ କାର୍ଯ୍ୟକଳାପର ଏହା କେବଳ ଏକ ବାନା ବୋଲି ବିଶ୍ବାସ କରା ହେଉଥିଲା । ଏହା ପରଠୁଁ ସାନ୍ ମିନ୍ ଚୁଆଇ ତିନୋଟି ବିପ୍ଳବୀ ନୀତି ସମ୍ବଳିତ ନୂଆ ସାନ୍ ମିନ୍ ଚୁଆଇରେ ପରିଣତ ହେଲା । କୋମିନ୍ ତାଙ୍ଗ୍ କମ୍ୟୁନିଷ୍ଟ ସହଯୋଗ ଫଳରେ, ଏବଂ ଦୁଇ ପାର୍ଟିର ସଭ୍ୟମାନଙ୍କର ଉଦ୍ୟମ ଫଳରେ ଜାତିର ଜନତା ଭିତରେ ଅର୍ଥାତ କେତେକ ଶିକ୍ଷିତ ଓ ସାସ୍କୃତିକ ମହଲରେ ଓ ବ୍ୟାପକ ଯୁବ ସଂପ୍ରଦାୟ ଭିତରେ ତାହା ଖୁବ୍ ପ୍ରସାର ଲାଭ କଲା । ନୂଆ ଗଣତନ୍ତ୍ରର ସାମ୍ରାଜ୍ୟବାଦ ବିରୋଧୀ, ସାମନ୍ତବାଦ ବିରୋଧୀ ସାନ ମିନ୍ ଚୁଆଇ ରେ ପରିଣତ ହେବାରୁ ଏହା ପକ୍ଷରେ ଏପରି ସଫଳତା ସମ୍ଭବ ହେଲା । ଏହି ବିକାଶ ନ ଘଟିଥିଲେ ସାନ୍ ମିନ୍ ଚୁଆଇ ଚିନ୍ତାଧାରାର ପ୍ରଚାର ଅସମ୍ଭବ ହୋଇ ଥାନ୍ତା । ଏହି ବିପ୍ଳବୀ ସାନମିନଚୁଆଇ ଏହି ଯୁଗରେ କୋମିନ୍ ତାଙ୍ଗ କମ୍ୟୁନିଷ୍ଟ ସହଯୋଗ ଓ ବିଭିନ୍ନ ବିପ୍ଳବୀ ଶ୍ରେଣୀମାନଙ୍କର ସହଯୋଗର ରାଜନୈତିକ ଭିତ୍ତି ହେଲା । "କମ୍ୟୁନିଜମ୍ ସାନ୍ ମିନ୍-ଚୁଆଇର ଉତ୍ତମ ବନ୍ଧୁ ।" ଏହି ଦୁଇନୀତି ଏକ ମିଳିତ ସାମ୍ମୁଖ୍ୟରେ ଦୃଢ଼ ହେଲା । ଶ୍ରେଣୀ ଦୃଷ୍ଟିରୁ ଏହା ସର୍ବହରା, ପେଟିବୁର୍ଜ୍ୱା ଓ ବୁର୍ଜ୍ୱା ଏହି ତିନୋଟି ଶ୍ରେଣୀର ମିଳିତ ସାମ୍ମୁଖ୍ୟ ହେଲା । ସାଙ୍ଘାଇର ମିନ କୁଓ—ଜିପାଓ ଏବଂ ଅନ୍ୟାନ୍ୟ ବିଭିନ୍ନ ସ୍ଥାନର ସମ୍ବାଦ ପତ୍ର ମାନଙ୍କୁ ଅସ୍ତ୍ର ରୂପେ ପାଇ ଏହି ଦୁଇଦଳ ମିଳିତ ଭାବେ ସାମ୍ରାଜ୍ୟବାଦ ବିରୁଦ୍ଧରେ ପ୍ରଚୁର ଆନ୍ଦୋଳନ ଚଳାଇଲେ

ଓ ସାମନ୍ତବାଦୀ କନ୍‌ଫୁସିଅସ ପୂଜା ଏବଂ ପ୍ରାଚୀନ ସାହିତ୍ୟକୁ ଖ୍ରୀଷ୍ଟୀୟ ସୁସମାଚାରରେ ପରିଣତ କରୁଥିବା ଶିକ୍ଷା ପଦ୍ଧତିର ବିରୋଧ କଲେ ଏବଂ ପୁରାତନ ସାମନ୍ତବାଦୀ ସାହିତ୍ୟ ଓ ପୁରାତନ ପନ୍ଥୀ ଭାଷାର ବିରୋଧ କଲେ । ଅଧିକନ୍ତୁ ଏମାନେ ସାମ୍ରାଜ୍ୟବାଦ ଓ ସାମନ୍ତବାଦ ବିରୋଧୀ ନୂତନ ସାହିତ୍ୟ ଓ ପାର୍ଟି ଦ୍ୱାରା ଡ଼ଙ୍ଗର ନୂତନ ଭାଷାର ପ୍ରବର୍ତ୍ତନ ଓ ପ୍ରସାର କଲେ । କ୍ୱାଙ୍ଗ୍‌ଟଙ୍ଗ୍ ଓ ଉତ୍ତରମୁଖୀ ଅଭିଯାନବେଳେ ପ୍ରଥମ ଥର ପାଇଁ ସୈନ୍ୟବାହିନୀକୁ ସାମ୍ରାଜ୍ୟବାଦ ଓ ସାମନ୍ତବାଦ ବିରୋଧୀ ଚିନ୍ତାଧାରାରେ ଶିକ୍ଷା ଦିଆଗଲା ଓ ସେମାନଙ୍କ ମୌଳିକ ଭାବେ ସଂସ୍କାର କରାଗଲା । "ବୈଦେଶିକ ଶକ୍ତି ଧ୍ୱଂସ ହେଉ" ଓ "ଜମିଦାର ଓ ସାମନ୍ତମାନେ ଧ୍ୱଂସ ହୁଅନ୍ତୁ" ସ୍ଲୋଗାନ କୃଷକମାନଙ୍କ ଭିତରେ ପ୍ରଥମ ଥର ପାଇଁ ବ୍ୟାପିବାକୁ ଲାଗିଲା । ଫଳରେ ଅନେକ ବୈପ୍ଳବିକ କୃଷକ ସଂଗ୍ରାମ ସଙ୍ଗଠିତ ହେଲା । ଏହି ସବୁ କାରଣରୁ ବିଶେଷତଃ ସୋଭିଏଟ୍ ୟୁନିଅନର ସାହାଯ୍ୟ ହେତୁ ଉତ୍ତରମୁଖୀ ଅଭିଯାନ ଜୟଯୁକ୍ତ ହେଲା । ଶ୍ରମିକ ଓ କୃଷକମାନେ ବୁର୍ଜୁୟାଶ୍ରେଣୀକୁ ଶାସନ ଗାଦିରେ ଚଢ଼ାଇବାକୁ ସାହାଯ୍ୟ କଲେ, ମାତ୍ର ବୁର୍ଜୁୟାମାନେ ବିପ୍ଳବକୁ ବିକିଦେଲେ ଏବଂ ରାଜନୈତିକ ଅବସ୍ଥା ଏକ ନୂଆ ପର୍ଯ୍ୟାୟରେ ପହଞ୍ଚିଲା ।

ତୃତୀୟ ଯୁଗ ହେଉଛି ୧୯୨୭ରୁ ୧୯୩୭ର ବୈପ୍ଳବିକ ଯୁଗ । ଆମେ ଜାଣୁ ଯେ ଦ୍ୱିତୀୟ ଯୁଗର ଶେଷ ଭାଗରୁ ବିପ୍ଳବୀ ଶିବିରରେ ଏକ ପରିବର୍ତ୍ତନ ଘଟିଲା । ବୁର୍ଜୁୟାଶ୍ରେଣୀ ତାଙ୍କର ନିଜର ପୂର୍ବବନ୍ଧୁମାନଙ୍କୁ ଛାଡ଼ି ପ୍ରତିବିପ୍ଳବୀ ସାମ୍ରାଜ୍ୟବାଦୀ ଓ ସାମନ୍ତବାଦୀ ଶକ୍ତିଙ୍କ ଶିବିରରେ ଯୋଗ ଦେଲେ । ଅତଃପର ବିପ୍ଳବୀ

ଶିବିରରେ ୪ଟି ଶ୍ରେଣୀ ଥିଲେ । ଏବେ ସେଥିରୁ ଦୁଇଟି ରହିଲେ । ଗୋଟିଏ ହେଉଛି ସର୍ବହରା ଶ୍ରେଣୀ, ଅନ୍ୟଟି ପେଟି ବୁର୍ଜୁୟା ଶ୍ରେଣୀ (ଏହି ଶ୍ରେଣୀ ଭିତରେ କୃଷକ, ବିପ୍ଲବୀ ବୁଦ୍ଧିଜୀବୀ ଓ ଅନ୍ୟାନ୍ୟ ପେଟି ବୁର୍ଜୁୟା ଲୋକ ଥିଲେ) ଚୀନ ବିପ୍ଲବ ଏକ ନୂଆ ଯୁଗରେ ପହଞ୍ଚିଲା, ଆଉ ଏକମାତ୍ର କମ୍ୟୁନିଷ୍ଟ ପାର୍ଟିହିଁ ଏହି ବିପ୍ଲବର ନେତା ହେଲା । ଏହି ଯୁଗରେ ବୈଶିଷ୍ଟ୍ୟ ହେଉଛି ଗୋଟିଏ ପାଖରେ କମ୍ୟୁନିଷ୍ଟ ବିରୋଧୀ ଅଭିଯାନ ଅନ୍ୟ ପାଖରେ ବିପ୍ଲବୀ ଶକ୍ତିମାନଙ୍କର ଗଭୀର ପ୍ରବେଶ । ଏ ଯୁଗରେ ଦୁଇ ପ୍ରକାରର କମ୍ୟୁନିଷ୍ଟ ବିରୋଧୀ ଅଭିଯାନ ଚାଲିଥିଲା । ଗୋଟିଏ ହେଉଛି ସାମରିକ ଅନ୍ୟଟି ସଂସ୍କୃତି ମୂଳକ । ଏହି ଯୁଗରେ ମଧ୍ୟ ବିପ୍ଲବୀ ଶକ୍ତିର ଦୁଇ ପ୍ରକାର ପ୍ରବେଶ ଘଟିଥିଲା — ଗୋଟିଏ ହେଉଛି ଗାଁ ଗହଳର ଜନ ସାଧାରଣଙ୍କ ଭିତରେ ପ୍ରବେଶ ଅନ୍ୟଟି ସାଂସ୍କୃତିକ ମହଲରେ ପ୍ରବେଶ । ଦୁଇ ପ୍ରକାରର କମ୍ୟୁନିଷ୍ଟ ବିରୋଧୀ ଅଭିଯାନ ଚଳାଇବା ଲାଗି ସାମ୍ରାଜ୍ୟବାଦୀମାନଙ୍କ ନେତୃତ୍ୱରେ ଚୀନ ଭିତରର ଓ ପୃଥିବୀର ସମସ୍ତ ପ୍ରତିକ୍ରିୟାଶୀଳ ଶକ୍ତି ସଙ୍ଗଠିତ ହୋଇଥିଲେ ଏବଂ ଏଥିଲାଗି ଦଶବର୍ଷ କଟିଗଲା । ଇତିହାସରେ ଏ ସମୟର ଦୁର୍ଦ୍ଦାନ୍ତ ଦମନ-ଲୀଳାର ତୁଳନା ନାହିଁ । ଲକ୍ଷ ଲକ୍ଷ କମ୍ୟୁନିଷ୍ଟପାର୍ଟି ସଭ୍ୟ ଓ ଯୁବକ ଛାତ୍ରଙ୍କୁ କାଟି ପକା ହୋଇଥିଲା । କୋଟି କୋଟି ଚାଷୀଙ୍କ ପ୍ରାଣ ନାଶ କରାଗଲା ବା ଦମନ କରାଗଲା । ଏହି ସବୁ ନିଷ୍ଠୁର ଅଭିଯାନ ପରେ ଶାସକ ଶ୍ରେଣୀ ଭାବିଲା ଯେ ସମସ୍ତ ଚୀନ କମ୍ୟୁନିଷ୍ଟ ମରିଛନ୍ତି ଓ କମ୍ୟୁନିଜିମ ଚିରଦିନ ଲାଗି ଲୋପ ପାଇ ଯାଇଛି । ମାତ୍ର ସେମାନଙ୍କର ଆଶା ନୈରାଶ୍ୟରେ ପରିଣତ ହେଲା । ଏ ଦୁଇଟିଯାକ ଅଭିଯାନରେ ସେମାନେ ବିଫଳ ହେଲେ । ସେମାନଙ୍କର ସାମରିକ ଅଭିଯାନ ହେତୁ ଲାଲସେନା ଜାପାନ

ବିରୁଦ୍ଧରେ ଲଢିବାକୁ ଉତ୍ସାହିତ କଲେ । ସେମାନଙ୍କର ସାଂସ୍କୃତିକ ଅଭିଯାନ ଫଳରେ ଡିସେମ୍ବର ୯ ଯୁବ ଆନ୍ଦୋଳନ ଘଟିଗଲା । ଏ ସବୁର ଫଳ ସ୍ୱରୂପ ଜନସାଧାରଣଙ୍କ ଜାଗରଣ ଦ୍ରୁତ ବଢ଼ି ଚାଲିଲା । ଏ ଗୁଡ଼ିକ ଅସ୍ତିମୂଳକ ଦୃଷ୍ଟିରୁ ଫଳାଫଳ । କୋମିନ୍‌ଟାଙ୍ଗ ଅଭିଯାନର ନାସ୍ତିମୂଳକ ଫଳାଫଳ ହେଲା ଯେ ଶକ୍ତିଶାଳୀ ଶତ୍ରୁ [ଜାପାନୀ ମାନେ-ଅନୁବାଦକ] ଦେଶ ଭିତରକୁ ପଶିଆସିଲେ । ସେହିହେତୁ ଆଜିବି ସାରା ଦେଶର ଲୋକେ ଦଶବର୍ଷର କମ୍ୟୁନିଷ୍ଟ ବିରୋଧୀ ଅଭିଯାନକୁ ଘୃଣା ଚକ୍ଷୁରେ ଦେଖୁଛନ୍ତି । ଏହି ଯୁଗର ସବୁଠୁଁ ଆଶ୍ଚର୍ଯ୍ୟର କଥା ଯେ ଦେଶର ସାଂସ୍କୃତିକ ଅନୁଷ୍ଠାନ ମାନଙ୍କରେ ଏ ସମୟ ଭିତରେ କମ୍ୟୁନିଷ୍ଟ ମାନଙ୍କ କିଛି ହାତ ନ ଥିଲା । ଯେଉଁଠାରୁ କି ସେମାନେ କୋମିନଟାଙ୍ଗ ସାଂସ୍କୃତିକ ଅଭିଯାନର ପ୍ରତିରୋଧ କରିପାରିଥାନ୍ତେ । ତଥାପି କୋମିନଟାଙ୍ଗର ଅଭିଯାନ ଅକୃତକାର୍ଯ୍ୟ ହେଲା । ଏହା କ'ଣ ଆମର ଗଭୀର ଚିନ୍ତାର ବିଷୟ ହେବା ଉଚିତ ନୁହେଁ ? ଏବଂ କମ୍ୟୁନିଜମରେ ବିଶ୍ୱାସୀ ଲୁସନ୍ କୋମିନ୍‌ଟାଙ୍ଗର ସାଂସ୍କୃତିକ ଅଭିଯାନ ଗୁଡ଼ିକ ଭିତରେ ହିଁ ଚୀନ ସାଂସ୍କୃତିକ ବିପ୍ଳବର ସୁବିଶାଳ ପ୍ରତୀକ ହୋଇ ଛିଡ଼ାହେଲେ ।

ଏ ଯୁଗର (ଅର୍ଥାତ ତୃତୀୟ ଯୁଗର-ଅନୁବାଦକ) ସଂଗ୍ରାମ ହେଉଛି ଏକପାଖରେ ବିପ୍ଳବୀମାନଙ୍କ ତରଫରୁ ଲୋକସ୍ୱାର୍ଥରକ୍ଷାକାରୀ, ସାମ୍ରାଜ୍ୟବାଦ ବିରୋଧୀ, ସାମନ୍ତ ବାଦ ବିରୋଧୀ ନୂଆ ଗଣତନ୍ତ୍ର ଅବା ନୂଆ ସାନ୍‌ମିନ୍‌ଚୁଆଇର ଦୃଢ଼ ପ୍ରତିରୋଧ ଓ ଅନ୍ୟପାଖରେ ପ୍ରତିବିପ୍ଳବୀମାନଙ୍କ ତରଫରୁ ସାମ୍ରାଜ୍ୟବାଦୀଙ୍କ ନେତୃତ୍ୱରେ ପରିଚାଳିତ ଚୀନ ଜମିଦାର ବୁର୍ଜୁୟା ସହଯୋଗରେ ଏକଚ୍ଛତ୍ରବାଦୀ ଶାସନ ।

ଜମିଦାର-ବୁର୍ଜୁୟା ଏକଚ୍ଛତ୍ରବାଦ ଡାକ୍ତର ସାନୟାତ ସେନଙ୍କ ନୂଆ ସାନମିନ୍‌ଚୁଆଇ ଓ ତନୋଟି ମୂଳ ନୀତିକୁ; ଉଭୟ ରାଜନୀତି ଓ ସଂସ୍କୃତିକୁ ବାଦ ଦେଇ ଚୀନ୍ ଜାତିଲାଗି ଘୋର ବିପର୍ଯ୍ୟୟ ଆଣିଦେଲା।

ଚତୁର୍ଥ ଯୁଗ ହେଉଛି ଆଜିକା ଜପାନ ବିରୋଧୀ ପ୍ରତିରୋଧ ସଂଗ୍ରାମ। ଚୀନ ବିପ୍ଳବର ବକ୍ରଗତି ଆଜି ପୁଣି ଏ ଯୁଗରେ ତିନି ଶ୍ରେଣୀର ମିଳିତ ସାମୁଖ୍ୟ ଆଣିଦେଉଛି। କିନ୍ତୁ ଏହି ମିଳିତ ସାମୁଖ୍ୟର ସମ୍ଭାବନା ଖୁବ୍ ବ୍ୟାପକ। ଉପର ଶ୍ରେଣୀରେ ଏହା ସମସ୍ତ ଶାସକ ଗୋଷ୍ଠୀକୁ, ମଧ୍ୟମ ଶ୍ରେଣୀରେ ଏହା ସମସ୍ତ ପେଟିବୁର୍ଜୁୟା ଲୋକଙ୍କୁ ଓ ନିମ୍ନ ଶ୍ରେଣୀରେ ଏହି ସାମୁଖ୍ୟ ସମସ୍ତ ସର୍ବହରାଙ୍କୁ ଏକତ୍ର ଟାଣୁଛି। ସଂକ୍ଷେପରେ ଜାପାନୀ ସାମ୍ରାଜ୍ୟବାଦୀଙ୍କ ଦୃଢ଼ ପ୍ରତିରୋଧ ଲାଗି ଜାତିର ସମସ୍ତ ଶ୍ରେଣୀ, ସମସ୍ତ ସ୍ତରର ଲୋକେ ଏହି ସାମୁଖ୍ୟର ସଭ୍ୟହୋଇ ପାରିବେ। ଏହି ଯୁଗର ପ୍ରଥମ ପର୍ଯ୍ୟାୟ ହାଙ୍କାଓର ପତନ ପରେ ଆସିଛି। ସେତେବେଳେ ଆମ ଜାତୀୟ ରାଜନୀତିରେ ନାନା ପରିବର୍ତ୍ତନ ଆସିଛି। ବଡ଼ ବୁର୍ଜୁୟାଶ୍ରେଣୀର ଏକ ଅଂଶ ଶତ୍ରୁପାଖରେ ଆତ୍ମସମର୍ପଣ କରିଛି ଏବଂ ଅନ୍ୟମାନେ ପ୍ରତିରୋଧ ସଂଗ୍ରାମ ବନ୍ଦକରି ଦେବାକୁ ଇଚ୍ଛା କରିଥିଲେ ବା ଇଚ୍ଛା କରିବେ ମଧ୍ୟ। ସଂସ୍କୃତି କ୍ଷେତ୍ରରେ ୟେ-ହିଙ୍ଗ୍ ଏବଂ ଅନ୍ୟାନ୍ୟ ମାନଙ୍କ ପ୍ରତିକ୍ରିୟାଶୀଳ ବକ୍ତୃତାରେ ଏବଂ ସଭାସମିତି ଓ ସଂବାଦପତ୍ରର ସ୍ୱାଧୀନତା ଲୋପହିଁ ଏହାର ପ୍ରତିଫଳନ।

ତେଣୁ ଏ ସଂକଟରୁ ଉଦ୍ଧାରିବାକୁ ହେଲେ ପ୍ରତିରୋଧ, ଏକତା ଓ ପ୍ରଗତି ବିରୋଧୀ ସର୍ବପ୍ରକାର ଚିନ୍ତାଧାରା ବିରୁଦ୍ଧରେ

ଦୃଢ଼ ସଂଗ୍ରାମ ହିଁ ଅବଶ୍ୟକ । ଏହି ପ୍ରତିକ୍ରିୟାଶୀଳ ଚକ୍ରାଧାରକୁ ପ୍ରତିହତ ନ କଲେ ପ୍ରତିରୋଧରେ ଆମର ବିଜୟ କଳ୍ପନାର ବାହାରେ । ସାରା ଜାତିର ଲୋକଙ୍କ ଆଗରେ ଆଜି ଏଇ ପ୍ରଶ୍ନ "ଏ ସଂଗ୍ରାମର ଭବିଷ୍ୟତ କ'ଣ" । ଜାତୀୟ ଓ ଆନ୍ତର୍ଜାତିକ ଅବସ୍ଥା ଦୃଷ୍ଟିରୁ ପ୍ରତିରୋଧ ପଥରେ ଯେତେ ଅସୁବିଧା ଥାଉ ପଛେ, ଚୀନ ଜନସାଧାରଣଙ୍କ ଭାଗ୍ୟରେ ବିଜୟ ଲେଖା ରହିଛି । ଚୀନ ଇତିହାସରେ ମଇ ଚୁଥ୍ ଆନ୍ଦୋଳନଠାରୁ କୋଡ଼ିଏ ବର୍ଷ ଭିତରେ ଯେଉଁ ପ୍ରଗତି ହୋଇଚି ତାହା କେବଳ ତା ପୂର୍ବ ୮୦ ବର୍ଷର ପ୍ରଗତିକୁ ଯେ ଟପି ଯାଇଛି ସେତିକି ନୁହଁ, ସହସ୍ର ସହସ୍ର ବର୍ଷର ପ୍ରଗତିକୁ ଏହା ଅତିକ୍ରମ କରି ଯାଇଛି । ଆଉ କୋଡ଼ିଏ ବର୍ଷ ଯଦି ଆମେ ଉଦ୍ୟମ କରୁ ଯେଉଁ ପ୍ରଗତି ହେବ ତାକୁ କ'ଣ ଆମେ କଳ୍ପନା କରି ପାରିବା ?

ଜାତୀୟ ଓ ଆନ୍ତର୍ଜାତିକ ଅନ୍ଧକାର ଶକ୍ତିର ଆକ୍ରମଣ ଆମ ଜାତି ଭାଗ୍ୟରେ ବିପର୍ଯ୍ୟୟ ଆଣି ଦେଇଛି । ଏହି ଆକ୍ରମଣ ଅନ୍ଧକାର ଶକ୍ତି ଯେ କେଡ଼େ ଶକ୍ତିଶାଳୀ ଖାଲି ସେତିକି ବୁଝାଉ ନାହିଁ, ଏହା ମଧ୍ୟ ଅନ୍ଧକାର ଶକ୍ତିର ଶେଷ ବେପରୁଆ ଆକ୍ରମଣର ଅଶୁଭ ସଂକେତ ଦେଉଚି ଓ ଜନସାଧାରଣଙ୍କ ଆସନ୍ନ ବିଜୟର ଶୁଭ ସଂକେତ ଦେଉଚି । ଏହା ପ୍ରାଚ୍ୟ ଜଗତ୍ ତଥା ସାରା ପୃଥିବୀ ପକ୍ଷରେ ସତ୍ୟ ।

---

—୧୪—

## ସାଂସ୍କୃତିକ ଆନ୍ଦୋଳନର ଚରିତ୍ର-ଗତ ପ୍ରଶ୍ନ ସମ୍ବନ୍ଧରେ ଆଂଶିକ ମତାମତ

କଠୋର ଓ ଜଟିଳ ସଂଗ୍ରାମ ଭିତରୁହିଁ ସଫଳତାର ଜନ୍ମ। ନୂଆ ସଂସ୍କୃତି ସେଥିରୁ ବାଦ୍ ନୁହଁ। ଗତ କୋଡିଏ ବର୍ଷ ଭିତରେ ଇତିହାସ ତିନିପ୍ରକାର ବଙ୍କା ଟଙ୍କା ବାଟରେ ଯାଇଛି। ସେ ସମୟ ଭିତରେ ଭଲ ଓ ଖରାପ ଲୋକେ ପରୀକ୍ଷିତ ହୋଇ ଧରା ପଡ଼ି ଯାଇଛନ୍ତି।

ରାଜନୀତି ପରି ସଂସ୍କୃତି ପ୍ରଶ୍ନରେ ମଧ୍ୟ ଜିଦ୍‌ଖୋର ବୁର୍ଜୁୟା ଲୋକେ ଭୁଲବୋଲି ପ୍ରମାଣିତ ହୋଇଛନ୍ତି। ନୂଆ ଯୁଗର ଚୀନର ଐତିହାସିକ ବିଶେଷତ୍ୱକୁ ସେମାନେ ଜାଣନ୍ତି ନାହିଁ ଏବଂ ସାଧାରଣ ଜନତାଙ୍କର ନୂଆ ଗଣତନ୍ତ୍ର ବା ନୂଆ ସାନ୍‌ମିନ୍‌ଚୁଆଇର ସଂସ୍କୃତିକୁ ସେମାନେ ସ୍ୱୀକାର କରନ୍ତି ନାହିଁ। ବୁର୍ଜୁୟା ଏକଛତ୍ରବାଦ ହେଉଛି ସେମାନଙ୍କ ମୂଳ ଆଧାର ଏବଂ ସଂସ୍କୃତି ଦୃଷ୍ଟିରୁ ଦେଖିଲେ ଏହା "ବୁର୍ଜୁୟାଶ୍ରେଣୀର ସାଂସ୍କୃତିକ-ଏକଛତ୍ରବାଦ" ତଥା କଥିତ ୟୁରୋପ-ଆମେରିକା ଗୋଷ୍ଠୀର ଭୃତେ ( ମୁଁ ଭୃତେ ବୋଲି କହୁଛି) ସାମ୍ପ୍ରତିକ ଲୋକ ସରକାରର "କମ୍ୟୁନିଷ୍ଟ ସଂସ୍କୃତିର ଦମନ"କୁ ପୂର୍ବେ ସମର୍ଥନ କରୁଥିଲେ ଏବଂ ଏବେ ମଧ୍ୟ "କମ୍ୟୁନିଷ୍ଟଙ୍କ ନିଯନ୍ତ୍ରଣ" "କମ୍ୟୁନିଷ୍ଟଙ୍କ ଉଚ୍ଛେଦ" ଇତ୍ୟାଦି ବର୍ତ୍ତମାନକାଳର ସରକାରୀ ନୀତିକୁ ସମର୍ଥନ କରୁଛନ୍ତି। ଶ୍ରମିକ ଓ କୃଷକ ମାନେ ରାଜନୈତିକ କ୍ଷମତା ହାସଲ କରନ୍ତୁ ବୋଲି ସେମାନେ ଯେପରି ଚାହାନ୍ତି ନାହିଁ, ସେମିତି ମଧ୍ୟ ଶ୍ରମିକ କୃଷକମାନେ ସଂସ୍କୃତି କ୍ଷେତ୍ରରେ

ଅଗେଇଯାନ୍ତୁ ବୋଲି ଚାହାନ୍ତି ନାହିଁ । ବୁର୍ଜୁୟା ଶ୍ରେଣୀର ଏ ପ୍ରକାର ସାଂସ୍କୃତିକ ଏକଛତ୍ରବାଦର ବାଣ୍ଟ ଏକ ଅଦାରୁଆ ଗଳବାନ୍ଧ । କାରଣ ସେମାନଙ୍କର ରାଜନୀତିକ ମାର୍ଗ ଭୁଲ ଓ ତାର କୌଣସି ଜାତୀୟ ବା ଅନ୍ତର୍ଜାତିକ ଭିତ୍ତିନାହିଁ । ସାଂସ୍କୃତିକ ଏକଛତ୍ରବାଦ କ୍ଷେତ୍ରରେ ମଧ୍ୟ ସେଇଆ ।

ସେମାନଙ୍କ ପକ୍ଷରେ ଏହି ସାଂସ୍କୃତିକ ଏକଛତ୍ରବାଦର "ଗଣ୍ଠିଲି" ବାନ୍ଧି ଦେବା ଭଲ ହେବ ।

ଜାତୀୟ ସଂସ୍କୃତିର ଦେଶମାର୍ଗ ଦୃଷ୍ଟିରୁ ବର୍ତ୍ତମାନ ସମାଜବାଦୀ ସଂସ୍କୃତିର ପ୍ରକୃତି ଚାଲିନାହିଁ । କିଂବା ବର୍ତ୍ତମାନ ସଂସ୍କୃତି ସମାଜ-ବାଦୀ ଅଛି ବା ସମାଜବାଦୀ ହେଉ ବୋଲି କହିବା ଠିକ୍ ନୁହଁ । ଏପରି ଧାରଣାର ଅର୍ଥ ଯେ କମ୍ୟୁନିଷ୍ଟ ଭାବ ଧାରାର ପ୍ରଚାରକୁ କମ୍ୟୁନିଷ୍ଟ କାର୍ଯ୍ୟକ୍ରମର ପ୍ରୟୋଗ ବୋଲି ଗ୍ରହଣ କରିବା ଅଥବା ଚୀନର ଗଣତାନ୍ତ୍ରିକ ବିପ୍ଳବ ଯୁଗରେ କମ୍ୟୁନିଷ୍ଟ ଦୃଷ୍ଟିଭଙ୍ଗୀ ଓ କମ୍ୟୁନିଷ୍ଟ ପଦ୍ଧତି ଖଟେଇ ଜାତୀୟ ଶିକ୍ଷା ସଂସ୍କୃତିର ପରିଚାଳନା କରିବା, ସମସ୍ୟାକୁ ପର୍ଯ୍ୟବେକ୍ଷଣ, ଅନୁଷ୍ଠାନ ଓ ସମାଧାନ କରିବାକୁ କହିବା । ସମାଜବାଦୀ ଜାତୀୟ ସଂସ୍କୃତିକୁ ସମାଜବାଦୀ ରାଜନୀତି ଓ ଅର୍ଥନୀତି ପ୍ରତିଫଳିତ କରିବ । ମାତ୍ର ବର୍ତ୍ତମାନ ଆମର ସମାଜବାଦୀ ରାଜନୀତି ବା ଅର୍ଥନୀତି ନାହିଁ । ତେଣୁ ଆମର ସମାଜବାଦୀ ଜାତୀୟ ସଂସ୍କୃତି ବର୍ତ୍ତମାନ ରହିପାରେନା । କିନ୍ତୁ ଯେହେତୁ ବର୍ତ୍ତମାନ ଚୀନ ବିପ୍ଳବ ପୃଥିବୀ ସର୍ବହରା ବିପ୍ଳବର ଏକ ଅଂଶ, ସେହି ହେତୁ ଚୀନର ବର୍ତ୍ତମାନ ନୂଆ ସଂସ୍କୃତି ପୃଥିବୀ ସର୍ବହରାର ସମାଜବାଦୀ ସଂସ୍କୃତିର ଏକ ଅଂଗ ଓ ତାହାର ବଡ଼ ବନ୍ଧୁ । ପୃଥିବୀର ସମାଜବାଦୀ ସଂସ୍କୃତି ସଙ୍ଗେ ଚୀନର ନୂଆ ସଂସ୍କୃତି ନିଜେ ଏକ ସମାଜବାଦୀ ସଂସ୍କୃତି

ହିସାବରେ ନୁହେଁ, କିନ୍ତୁ ଚୀନ ଜନତାଙ୍କ ନୂଆ ଗଣତନ୍ତ୍ରର ସାମ୍ରାଜ୍ୟ ବାଦ ବିରୋଧୀ, ସାମନ୍ତବାଦ ବିରୋଧୀ ସଂସ୍କୃତି ହିସାବରେ ଯୋଗ ଦେଉଛି । ଚୀନର ବର୍ତ୍ତମାନ ବିପ୍ଳବ ଯେପରି ଚୀନ ସର୍ବହରା ନେତୃତ୍ୱରୁ ଅଲଗା ରହି ନ ପାରେ, ସେମିତି ଚୀନର ବର୍ତ୍ତମାନ ସଂସ୍କୃତି ଚୀନ ସର୍ବହରାର ସାଂସ୍କୃତିକ ଭାବ ଧାରା ଅର୍ଥାତ୍ କମ୍ୟୁନିଜମର ନେତୃତ୍ୱରୁ ଅଲଗା ରହି ନ ପାରେ । ମାତ୍ର ଏହି ନେତୃତ୍ୱ ଜନ-ସାଧାରଣଙ୍କ ସାମ୍ରାଜ୍ୟବାଦ ବିରୋଧୀ, ସାମନ୍ତବାଦ ବିରୋଧୀ ରାଜନୈତିକ ଓ ସାଂସ୍କୃତିକ ବିପ୍ଳବ ଚଳାଇବାକୁ ବାଟ ବତେଇବ; ମାତ୍ର ସମାଜବାଦୀ ବିପ୍ଳବ ଚଳାଇବାକୁ ବାଟ ବତେଇବ ନାହିଁ । ତା ଅର୍ଥ ବର୍ତ୍ତମାନ ଚୀନର ନୂଆ ସଂସ୍କୃତିର ପ୍ରକୃତି ହେଉଚି ନୂଆ ଗଣତନ୍ତ୍ରର ପ୍ରକୃତି; ସମାଜବାଦୀ ପ୍ରକୃତି ନୁହେଁ ।

ଏକଥା ନିଃସନ୍ଦେହ ଯେ ଆମେ ଏଇଲେ କମ୍ୟୁନିଷ୍ଟ ଭାବ ଧାରାର ପ୍ରସାର ବଢ଼ାଇବୁ ଓ ମାର୍କସବାଦ ଲେନିନ୍‌ବାଦର ଶିକ୍ଷାକୁ ଖୁବ ପ୍ରସାର କରିବୁ । କାରଣ ତା ନକଲେ ଆମେ କେବଳ ଚୀନ ବିପ୍ଳବକୁ ସମାଜବାଦୀ ସ୍ତରକୁ ନେଇଯିବାରେ ଯେ ଅସମର୍ଥ ହେବୁ ସେତିକି ନୁହେଁ, ବର୍ତ୍ତମାନର ଗଣତାନ୍ତ୍ରିକ ବିପ୍ଳବକୁ ମଧ୍ୟ ନେତୃତ୍ୱ ଦେଇ ପାରିବୁ ନାହିଁ କି ଏ ବିପ୍ଳବକୁ ସଫଳ କରି ପାରିବୁ ନାହିଁ । ଯାହା ହେଉନା କାହିଁକି ତେଣୁ ଏପର୍ଯ୍ୟନ୍ତ ଏକଥା ସତ୍ୟ ଯେ ବର୍ତ୍ତମାନ ଜାତୀୟ ସଂସ୍କୃତିର ମୌଳିକ ପ୍ରକୃତି, ନୂଆଗଣତାନ୍ତ୍ରିକ ପ୍ରକୃତି । ସମାଜବାଦୀ ନୁହେଁ । କାରଣ ଜନସାଧାରଣଙ୍କର ଏହା ସାମ୍ରାଜ୍ୟବାଦ ବିରୋଧୀ, ସାମନ୍ତବାଦ ବିରୋଧୀ ସଂସ୍କୃତି, ସର୍ବହରାର ପୁଞ୍ଜିବାଦ ବିରୋଧୀ ସଂସ୍କୃତି ନୁହେଁ । କମ୍ୟୁନିଷ୍ଟ ଭାବଧାରା ଓ ସାମାଜିକ ବ୍ୟବସ୍ଥାର ପ୍ରଣାଳୀକୁ ଆମେ

ନୂଆ ଗଣତନ୍ତ୍ରର କାର୍ଯ୍ୟକ୍ରମର ପ୍ରୟୋଗ ଠାରୁ ଅଲଗା ରଖିବାକୁ ହେବ ଏବଂ ସମସ୍ୟାମାନଙ୍କର ପର୍ଯ୍ୟବେକ୍ଷଣ, ଅନୁଶୀଳନ ଓ ସମାଧାନ ଲାଗି ଉଦ୍ୟମ କଲାବେଳେ କମ୍ୟୁନିଷ୍ଟ ପଦ୍ଧତିର ପ୍ରୟୋଗକୁ ଜାତୀୟ ସଂସ୍କୃତିର ନୂଆ ଗଣତାନ୍ତ୍ରିକ ପରିଚାଳନା ଠାରୁ ଅଲଗା କରିବାକୁ ହେବ । ଏ ଦୁଇଟିକୁ ମିଶାଇଦେଲେ ଠିକ୍ ହେବ ନାହିଁ ।

ଏଥିରୁ ଆମେ ଜାଣି ପାରିବା ଯେ ବର୍ତ୍ତମାନ ଯୁଗରେ ଚୀନ ନୂଆ ସଂସ୍କୃତିର ବିଷୟବସ୍ତୁ ବୁର୍ଜୁଆ ସାଂସ୍କୃତିକ ଏକଛତ୍ରବାଦ ନୁହେଁ କି ସର୍ବହରା ସମାଜବାଦ ନୁହେଁ । ଏହା ସର୍ବହରା ସାଂସ୍କୃତିକ ଭାବଧାରା ଦ୍ୱାରା ପରିଚାଳିତ ସାମ୍ରାଜ୍ୟବାଦ ବିରୋଧୀ, ସାମନ୍ତବାଦ ବିରୋଧୀ ନୂଆ ଗଣତନ୍ତ୍ର କିମ୍ବା ଚୀନ ଲୋକଙ୍କର ନୂଆ ସାନମିନ୍ ଚୂଆଇ ।

---

—୧୫—

## —ଏକ ଜାତୀୟ, ବୈଜ୍ଞାନିକ ଏବଂ ଜନପ୍ରିୟ ସଂସ୍କୃତି—

ନୂଆ ଗଣତନ୍ତ୍ରର ସଂସ୍କୃତି ବୈଶିଷ୍ଟ୍ୟରେ ଜାତୀୟ । ଏହା ସାମ୍ରାଜ୍ୟବାଦୀ ଅତ୍ୟାଚାରର ବିରୋଧ କରେ ଏବଂ ଚୀନ ଜାତିର ମର୍ଯ୍ୟାଦା ଓ ସ୍ୱାଧୀନତାର ଦାବୀକୁ ଉପସ୍ଥାପିତ କରେ । ଏ ସଂସ୍କୃତିର ମାଲିକ ଆମେ ତେଣୁ ଆମ ଜାତିର ସମସ୍ତ ବୈଶିଷ୍ଟ୍ୟ ଏଥିରେ ରହିଛି । ଅନ୍ୟାନ୍ୟ ଜାତିର ନୂଆ ଗଣତାନ୍ତ୍ରିକ ସଂସ୍କୃତି ଓ ସମାଜବାଦୀ ସଂସ୍କୃତି ସଙ୍ଗେ ଏହା ଯୋଗଦିଏ । ସେମାନଙ୍କ ସଙ୍ଗେ ଏ ସଂସ୍କୃତି ଏପରି ସଂପର୍କ ପ୍ରତିଷ୍ଠା କରେ ଯାହା ଫଳରେ ପରସ୍ପର ପରସ୍ପର ଠାରୁ ଗ୍ରହଣ କରନ୍ତି । ପରସ୍ପରର ବିକାଶ ଲାଗି ସାହାଯ୍ୟ

କରନ୍ତି ଏବଂ ପୃଥିବୀର ନୂଆ ସଂସ୍କୃତିର ଅଂଶ ହିସାବରେ ପାରସ୍ପରିକ ଭିତ୍ତିରେ ସେମାନଙ୍କ ସଙ୍ଗେ କାମ କରନ୍ତି । ଏକଥା ସତ ଚୀନ ବିଦେଶୀ ଜାତିମାନଙ୍କର ପ୍ରଗତିଶୀଳ ସଂସ୍କୃତିକୁ ନିଜ ସାଂସ୍କୃତିକ ଖାଦ୍ୟର କଞ୍ଚାମାଲ୍ ହିସାବରେ ଅଧିକ ପରିମାଣରେ ହଜମ କରି ନେବା ଉଚିତ । ଅତୀତରେ ଆମେ ସେତେ ହଜମ କରିନାହୁଁ । ଆମେ ଆଜି ଯାହା ବିଦେଶୀ ଦେଶମାନଙ୍କ ସଂସ୍କୃତିରେ ଦରକାରୀ ମନେ କରିବୁ ସେଗୁଡ଼ିକୁ ହଜମ କରିନେବୁ । ଖାଲି ଯେ ଅନ୍ୟାନ୍ୟ ଜାତିଙ୍କର ଆଜିକାଲିକା ସମାଜବାଦୀ ବା ନୂଆ ଗଣତାନ୍ତ୍ରିକ ସଂସ୍କୃତିକୁ ହଜମ କରିବୁ ସେତିକି ନୁହେଁ, ଆଉରି ମଧ୍ୟ ପୁରାତନ ସଂସ୍କୃତିରୁ ସାର ଗ୍ରହଣ କରିବୁ । ଅର୍ଥାତ ବିଦେଶୀ ପୁଞ୍ଜିବାଦୀ ଦେଶମାନଙ୍କ ସାଂସ୍କୃତିକ ଅଭ୍ୟୁତ୍ଥାନ ସମୟର ସଂସ୍କୃତିରୁ ସାର ଗ୍ରହଣ କରିବୁ ।

ଆମ ଖାଦ୍ୟକୁ ଆମେ ଯେମିତି ଦେଖୁଁ, ସେମିତି ଏ ପ୍ରକାର ବିଦେଶୀ ପଦାର୍ଥକୁ ଦେଖିବା ଉଚିତ । ଆମେ ଆମ ଖାଦ୍ୟକୁ ଚୋବାଇବାକୁ ପାଟିକୁ ନେଉଁ । ତାପରେ ପାକସ୍ଥଳୀକୁ ଓ ଅନ୍ତ୍ରାଶୟକୁ ନେଉ । ତା ସଙ୍ଗରେ ମୁହଁରୁ ବାହାରୁଥିବା ରସ (ସାଲିଭା) ପାଚକରସ [ପେପସିନ୍] ଏବଂ ଅନ୍ତ୍ରାଶୟରୁ ଅନ୍ୟାନ୍ୟ ନିସୃତ ରସ ମିଶାଉ । ତାହା ଫଳରେ ଖାଦ୍ୟକୁ ଆମେ ସାର ପଦାର୍ଥ ଓ ମଳମୂତ୍ର ଆଦି ବଳକା ପଦାର୍ଥରେ ବିଭାଗ କରୁ । ତାପରେ ସାର ପଦାର୍ଥକୁ ଦେହ ପୁଷ୍ଟି କରିବାକୁ ହଜମ କରିଦେଉ ଓ ବଳକା ଯାକ ଛାଡି ଦେଉ । ଠିକ୍ ସେହିପରି ସାଂସ୍କୃତିକ ପଦାର୍ଥକୁ ଆମେ ଭଲମନ୍ଦ ପରଖି କରିବୁ । ଖାଲି ବିନା ସର୍ତ୍ତରେ ଅନ୍ଧଭାବେ ସବୁ କିଛି ହଜମ କରିଦବୁ ନାହିଁ । "ବିନା ସର୍ତ୍ତରେ ପାଶ୍ଚାତ୍ୟ କରଣର"ର ଧାରଣା

ଭୁଲ; ଅତୀତରେ ବିଦେଶୀ ପଦାର୍ଥକୁ ବାଛବିଚାର ନ କରି ଗ୍ରହଣ କରି ଯାଇଥିବାରୁ ଚୀନ ଖୁବ୍ ଯାତନା ଭୋଗିଛି, ମାର୍କସ ବାଦର ପ୍ରୟୋଗରେ ମଧ୍ଯ ଚୀନ କମ୍ୟୁନିଷ୍ଟମାନେ ଏ ନିୟମକୁ ଭାଙ୍ଗିବେ ନାହିଁ; ମାର୍କସବାଦର ସାଧାରଣ ସତ୍ୟ ଓ ଚୀନ ବିପ୍ଳବର ବାସ୍ତବ ଅଭ୍ୟାସକୁ ଉଚିତମତେ ଆମେ ଏକତ୍ର କରିବୁ । ମାର୍କସବାଦକୁ ଦରକାରି ବୋଲି ପାଇବା ଆଗରୁ ଆମେ ଜାତୀୟ ରୂପକୁ ଗ୍ରହଣ କରିବୁ । ମାତ୍ର ତାକୁ ଯାନ୍ତ୍ରିକ ଭାବେ କିଂବା ପରସ୍ପରଠାରୁ ଅଲଗା କରି ଗ୍ରହଣ କରିବୁ ନାହିଁ । ଯେଉଁ ମାର୍କସବାଦୀ ମାନେ ପରସ୍ପରର ସମ୍ପର୍କ ଦେଖନ୍ତି ନାହିଁ ଓ ମାର୍କସବାଦକୁ ମାମୁଲି ଭାବେ ବୁଝନ୍ତି ସେମାନେ ଚୀନ ବିପ୍ଳବ ସଙ୍ଗେ ଖେଳ ଖେଳୁଛନ୍ତି । ଚୀନ ବିପ୍ଳବୀ ମହଲରେ ସେମାନଙ୍କର ସ୍ଥାନ ନାହିଁ, ଚୀନ ସଂସ୍କୃତିର ନିଜର ଅର୍ଥାତ୍ ଜାତୀୟ ରୂପ ଓ ନୂଆ ଗଣତାନ୍ତ୍ରିକ ବିଷୟ ବସ୍ତୁ ହେଉଛି ଆମର ଆଜିକା ନୂଆ ସଂସ୍କୃତି ।

ନୂଆ ଗଣତାନ୍ତ୍ରିକ ସଂସ୍କୃତିର ବୈଜ୍ଞାନିକ ବୈଶିଷ୍ଟ୍ୟ ରହିଛି, ଏହା ସବୁ ପ୍ରକାର ସାମନ୍ତବାଦୀ ଓ କୁସଂସ୍କାର ମୂଳକ ଭାବଧାରାକୁ ଛାଡ଼ିଦେବ । ଏହି ସଂସ୍କୃତି ବାସ୍ତବ ସତ୍ୟକୁ ଏବଂ ତତ୍ତ୍ୱ ଓ ବାସ୍ତବ କାର୍ଯ୍ୟର ସମନ୍ୱୟକୁ ପ୍ରଚାର କରିବ । କାରଣ ଏହା ବାସ୍ତବଘଟଣାରୁ ସତ୍ୟର ସନ୍ଧାନ କରେ ।

ଏଇଠି ଚୀନ ସବଂହାରାର ବୈଜ୍ଞାନିକ ଭାବଧାରା ଏକ ସାମ୍ରାଜ୍ୟବାଦ ବିରୋଧୀ, ସାମନ୍ତବାଦ ବିରୋଧୀ ଓ କୁସଂସ୍କାର ବିରୋଧୀ ମିଳିତ ସାମ୍ମୁଖ୍ୟ ଗଢ଼ିବ । ବୁର୍ଜୁୟାଙ୍କର ଯେଉଁ ବସ୍ତୁବାଦ ଓ ଯେଉଁ ପ୍ରାକୃତିକ ବିଜ୍ଞାନଗୁଡ଼ିକ ତଥାପି ପ୍ରଗତିଶୀଳ ଅଛି ସେଗୁଡ଼ିକ ସଙ୍ଗେ ଏହି ମିଳିତ ସାମ୍ମୁଖ୍ୟ ଗଢ଼ାଯିବ । ମାତ୍ର

ପ୍ରତିକ୍ରିୟାଶୀଳ ଆଦର୍ଶବାଦ ସଙ୍ଗେ ଏହା କେବେହେଲେ ମିଳିତ ସାମ୍ମୁଖ୍ୟ ଗଢିବ ନାହିଁ । କେତେକ ଆଦର୍ଶବାଦୀ ଓ ଧର୍ମଭକ୍ତ-ମାନଙ୍କ ସଙ୍ଗେ ଚୀନ କମ୍ୟୁନିଷ୍ଟମାନେ ରାଜନୀତି କ୍ଷେତ୍ରରେ ମିଳିତ ସାମ୍ମୁଖ୍ୟ ଗଢି ପାରନ୍ତି । କିନ୍ତୁ କମ୍ୟୁନିଷ୍ଟମାନେ କେବେହେଁ ସେମାନଙ୍କର ଆଦର୍ଶବାଦ ଓ ଧର୍ମଶିକ୍ଷାକୁ ସମର୍ଥନ କରିବେ ନାହିଁ । ଅତି ପୂର୍ବକାଳରେ ଚୀନ-ସାମନ୍ତବାଦ ଏକ ଉଜ୍ଜ୍ୱଳ ସଂସ୍କୃତି ସୃଷ୍ଟି କରିଥିଲା । ସେହି ପୁରୁଣା ସଂସ୍କୃତି କିପରି ବିକାଶ ଲାଭ କଲା ତାର ଧାରାକୁ ଆମକୁ ଦେଖିବାକୁ ହେବ । ସେହି ସଂସ୍କୃତିରୁ ତାର ଗଣତାନ୍ତ୍ରିକ ସାର ପଦାର୍ଥକୁ ଆମେ ହଜମ କରିବୁ । ତାହାର ସାମନ୍ତବାଦୀ ବଳକା ପଦାର୍ଥକୁ ଫିଙ୍ଗିଦେବୁ । କାରଣ ନୂଆ ଜାତୀୟ ସଂସ୍କୃତିକୁ ବିକାଶ କରାଇବାରେ ଓ ଜାତୀୟ ଆତ୍ମବିଶ୍ୱାସକୁ ବଢ଼ାଇବାରେ ତାହା ଆବଶ୍ୟକ । କିନ୍ତୁ ବିନା ସର୍ତ୍ତରେ ଆମେ ସବୁ ହଜମ କରିଦେବୁ ନାହିଁ । ପୁରୁଣା ସାମନ୍ତବାଦୀ ଶାସକ ଶ୍ରେଣୀର ପଚା ସଢ଼ା ପଦାର୍ଥକୁ ଆମେ ସେ ସଂସ୍କୃତିରୁ ଅଲଗା କରିଦେବୁ । କିମ୍ବା ଉକ୍ତ ସଂସ୍କୃତିରେ ଥିବା ପଚା ସଢ଼ା ପଦାର୍ଥଠାରୁ ସେଥିରେ ଥିବା ଅଳ୍ପ ବହୁତ ଗଣତାନ୍ତ୍ରିକ ଓ ବିପ୍ଳବୀ ପ୍ରକୃତି ବିଶିଷ୍ଟ ପଦାର୍ଥକୁ ଅଲଗା କରି ଆଣିବୁ । ଆମର ବର୍ତ୍ତମାନର ନୂଆ ରାଜନୀତି ଓ ନୂଆ ଅର୍ଥନୀତି ଆମର ପୁରୁଣା ରାଜନୀତି ଓ ପୁରୁଣା ଅର୍ଥନୀତିରୁ ବିକାଶଲାଭ କରିଛି । ତେଣୁ ଆମେ ଆମ ଇତିହାସକୁ ସମ୍ମାନ ଦେଖାଇବୁ । ତାଠାରୁ ଆମେ ଅଲଗା ରହିବୁ ନାହିଁ । ମାତ୍ର ଇତିହାସକୁ ସମ୍ମାନ ଦେଖାଇବା ଅର୍ଥ ତାକୁ ବିଜ୍ଞାନମାନଙ୍କ ଭିତରେ ଯଥାର୍ଥ ସ୍ଥାନ ଦେବା । ସେହି ଇତିହାସର ଦ୍ୱନ୍ଦ୍ୱାତ୍ମକ ବିକାଶକୁ ସମ୍ମାନ କରିବା । ଆମେ ପୁରୁଣା ଯୁଗର ସ୍ତୁତି ଗାଇବୁ ନାହିଁ କି ନୂଆ ଯୁଗର ନିନ୍ଦା କରିବୁ ନାହିଁ । କିମ୍ବା ଆମେ ସେଥିରେ ଥିବା

ସାମନ୍ତବାଦୀ ବିଷ ପଦାର୍ଥକୁ ସମ୍ମାନ କରି ପ୍ରଶଂସା ଗାନ କରିବୁ ନାହିଁ । ଏହି କାରଣରୁ ଜନ ସାଧାରଣ ଓ ତରୁଣ ଛାତ୍ରମାନଙ୍କ ପକ୍ଷରେ ପ୍ରଧାନ କର୍ତ୍ତବ୍ୟ ହେଉଛି ଅଗକୁ ଅଗେଇବା, ପଛକୁ ଫେରି ଚାହିଁବା ନୁହେଁ ।

ନୂଆ ଗଣତାନ୍ତ୍ରିକ ସଂସ୍କୃତିର ଜନପ୍ରିୟ ବୈଶିଷ୍ଟ୍ୟ ରହିଛି । ମେହେନତକାରୀ ଲୋକଙ୍କର ଏହା ସେବା କରିବା କଥା । କାରଣ, ସେମାନେ ସମୁଦାୟ ଚୀନଜନତାର ଶତକଡ଼ା ୯୦ଭାଗ । ତେଣୁ ଏହି ସଂସ୍କୃତି କ୍ରମେ ସେହିମାନଙ୍କର ହିଁ ସଂସ୍କୃତିରେ ପରିଣତ ହେବ । ବିପ୍ଳବୀ କର୍ମୀମାନଙ୍କୁ ଶିକ୍ଷା ଦେବାକୁ ଏକପ୍ରକାରର ଜ୍ଞାନ ଆବଶ୍ୟକ ବିପ୍ଳବୀ ଜନସାଧାରଣଙ୍କୁ ମଧ୍ୟ ଶିକ୍ଷାଦେବାକୁ ଏକପ୍ରକାରର ... ଦରକାର । ଏଇ ଦୁଇଜ୍ଞାନ ଭିତରେ ପାର୍ଥକ୍ୟ ଅମକୁ ସ୍ଥିର କରିବାକୁ ହେବ । ଏ ଦୁହିଁଙ୍କ ଭିତରେ ସଂଯୋଗ ମଧ୍ୟ ସ୍ଥାପନ କରିବାକୁ ହେବ । ସଂସ୍କୃତିର ମାନକୁ ଉଚ୍ଚ କରିବାକୁ ହେବ । ପୁଣି ସଂସ୍କୃତିକୁ ବହୁତ ପ୍ରସାର କରାଇବାକୁ ପଡ଼ିବ । ଏ ଦୁହିଙ୍କ ଭିତରେ ପାର୍ଥକ୍ୟ ଅମକୁ ସ୍ଥିର କରିବାକୁ ହେବ । ଆହୁରିମଧ୍ୟ ଏ ଦୁହିଁଙ୍କ ମଧ୍ୟରେ ସଂଯୋଗ ସ୍ଥାପନ କରିବାକୁ ପଡ଼ିବ ।

ଜନସାଧାରଣଙ୍କ ହାତରେ ବିପ୍ଳବୀ ସଂସ୍କୃତି ଏକ ବଡ଼ ଅସ୍ତ୍ର ବିପ୍ଳବ ଅରମ୍ଭ ହୋଇଯିବା ପୂର୍ବରୁ ବିପ୍ଳବୀ ଭାବଧାରା ପ୍ରଚାର କରି ସଂସ୍କୃତି ତା ଲାଗି ବାଟ ଖୋଲି ଦିଏ ।

ବିପ୍ଳବ ବେଳେ ସାଧାରଣ ବିପ୍ଳବୀ ସାମୁଖ୍ୟରେ ସଂସ୍କୃତି ଏକ ପ୍ରଧାନ ଓ ଦରକାରୀ ସାମ୍ମୁଖ୍ୟ ଏହି ସାଂସ୍କୃତିକ ସାମ୍ମୁଖ୍ୟରେ ,ବିପ୍ଳବୀ ସାଂସ୍କୃତିକ କର୍ମୀମାନେ ବିଭିନ୍ନ ପାହ୍ୟାର "ସେନାନାୟକ ।" ଏକ ବିପ୍ଳବୀ ତତ୍ତ୍ୱବିନା ବିପ୍ଳବୀ ଆନ୍ଦୋଳନ ହୋଇ

ପାରେନା ?" ତେଣୁ ଏଥିରୁ ବିପ୍ଳବୀ ଅଭ୍ୟାସ ଲାଗି ଯେ ବିପ୍ଳବୀ ସାଂସ୍କୃତିକ ଆନ୍ଦୋଳନ କେତେ ଆବଶ୍ୟକ ତାହା ଆମେ ବୁଝିପାରିବା ଏହି ସାଂସ୍କୃତିକ ଆନ୍ଦୋଳନ ଓ ବିପ୍ଳବୀ କାର୍ଯ୍ୟ ହେଉଛି ଲୋକଙ୍କର ଆନ୍ଦୋଳନ ଓ ବିପ୍ଳବୀ କାର୍ଯ୍ୟ । ତେଣୁ ସମସ୍ତ ପ୍ରଗତିଶୀଳ ସାଂସ୍କୃତିକ କର୍ମୀମାନେ ଜାପାନ ବିରୋଧୀ ଯୁଦ୍ଧରେ ସେମାନଙ୍କ ସାଂସ୍କୃତିକ ସେନାବାହିନୀ ରଖିବା ଦରକାର । ଜନଗଣ ଓ ଜନସାଧାରଣଙ୍କ ବ୍ୟତୀତ ଏ ସୈନ୍ୟବାହିନୀ ଆଉ କିଛି ନୁହେ ।

ଯେଉଁ ସାଂସ୍କୃତିକ କର୍ମୀମାନେ ଓ ଯେଉଁ ସାଂସ୍କୃତିକ ଭାବ-ଧାରା ଜନଗଣ ଓ ଜନସାଧାରଣଙ୍କ ଠାରୁ ବିଚ୍ଛିନ୍ନ ସେମାନେ "ସେନାବିହୀନ ସେନାନାୟକ" ଅବା "ଆକାଶ ଦୁର୍ଗର ସେନାପତି ।" ସେମାନଙ୍କର ବାଣୀ ଶତ୍ରୁ ନିକଟରେ ପହଞ୍ଚି ପାରିବ ନାହିଁ । ଆମର ଏହି ଲକ୍ଷ୍ୟ ହାସଲ କରିବାକୁ ହେଲେ କେତେକ ସ୍ଥଳରେ ଭାଷାକୁ ସଂସ୍କାର କରିବାକୁ ପଡ଼ିବ । ଏବଂ ଜନସାଧାରଣଙ୍କ ସଙ୍ଗେ ଶାନ୍ତି ସୁଦୃଢ଼ର ଘନିଷ୍ଠ ସଂପର୍କ ରହିବ । ଜନସାଧାରଣ ଯେ ଆମ ବିପ୍ଳବୀ ସଂସ୍କୃତିର ଅସୀମଶକ୍ତି ଏ କଥା ବୁଝିବା ଦରକାର ।

ଏହି ଜାତୀୟ, ବୈଜ୍ଞାନିକ ଓ ଜନପ୍ରିୟ ସଂସ୍କୃତି ହେଉଛି ଜନସାଧାରଣଙ୍କର ସାମ୍ରାଜ୍ୟବାଦ ବିରୋଧୀ, ସାମନ୍ତବାଦ ବିରୋଧୀ ସଂସ୍କୃତି । ଏହା ମଧ୍ୟ ନୂଆ ଗଣତନ୍ତ୍ର ଓ ନୂଆ ସାନ୍‌ମିନ୍‌ଚୁଆଇ ଓ ଚୀନ ଜାତିର ସଂସ୍କୃତି ।

ନୂଆ ଗଣତାନ୍ତ୍ରିକ ରାଜନୀତି, ନୂଆଗଣତାନ୍ତ୍ରିକ ଅର୍ଥନୀତି, ନୂଆଗଣତାନ୍ତ୍ରିକ ସଂସ୍କୃତିର ସମିଶ୍ରଣ ହେଉଛି ନୂଆ ଗଣତାନ୍ତ୍ରିକ ଜନତନ୍ତ୍ର । ଏହା ନାମ ଓ କାର୍ଯ୍ୟରେ ପ୍ରକୃତ ଜନତନ୍ତ୍ର । ଏବଂ ଆମେ

ଏହାପରେ ଏକ ନୂଆ ଚୀନ ପ୍ରତିଷ୍ଠାକରିବାକୁ ଗ୍ରହୁଁ । ଅମେ ତାହାର ସାଦର ଅଭ୍ୟର୍ଥନା ଲାଗି ପ୍ରସ୍ତୁତ ହୋଇଯିବା ଉଚିତ ।

ଦିଗ୍‌ବଳୟ ସେ ପଟେ ନୂଆ ଚୀନରୂପ ଜାହାଜର ମାସ୍ତୁଲ ଦେଖା ଦେଲାଣି । ଅମେ କରତାଳି ଦେଇ ତାକୁ ଅଭିନନ୍ଦନ ଜଣାଇବୁ । ଦୁଇହାତ ଉର୍ଦ୍ଧ୍ୱକୁ ଟେକ । ନୂଆ ଚୀନ ଅମର ।

---

Printed by G. Nagabhushana, at the Kalinga Press,
Cuttack.—1953.

